ଓଁ

# ଶ୍ରୀମଦ୍ ଭାଗବତ

(ସଂକ୍ଷିପ୍ତ ସାର ସଂଗ୍ରହ)



ସଂଗ୍ରାହକ - କୃଷ୍ଣଚନ୍ଦ୍ର ମିଶ୍ର

(ଅବସରପ୍ରାପ୍ତ ଶିକ୍ଷକ)

ଓଁ

# ଶ୍ରୀମଦ୍ ଭାଗବତ

## (ସଂକ୍ଷିପ୍ତ ସାର ସଂଗ୍ରହ)



ସଂଗ୍ରାହକ- ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର
ଲକ୍ଷ୍ମୀଧର ପୁର, କୋଦଣ୍ଡପୁର-ଯାଜପୁର

# ଓଁ ଶ୍ରୀମଦ୍ ଭାଗବତ

## ( ସଂକ୍ଷିପ୍ତ ସାର ସଂଗ୍ରହ )

ସଂଗ୍ରାହକ :—

**ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର**

ଅବସର ପ୍ରାପ୍ତ ଶିକ୍ଷକ

ଲକ୍ଷ୍ମୀଧର ପୁର, କୋଦଣ୍ଡପୁର-ଯାଜପୁର

ପ୍ରକାଶକ :—

**ଶ୍ରୀ ନୃସିଂହ ଚରଣ ମିଶ୍ର**

ସିଦ୍ଧେଶ୍ୱର, ରାମବାଗ-ଯାଜପୁର

ପ୍ରାପ୍ତି ସ୍ଥାନ :—

**ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର**

ଲକ୍ଷ୍ମୀଧର ପୁର, କୋଦଣ୍ଡପୁର-ଯାଜପୁର

ମୁଦ୍ରଣ :—

**ମୁଦ୍ରଣ ମନ୍ଦିର**

ହାବେଳି ବଜାର, ଯାଜପୁର

**ମୂଲ୍ୟ-୧୦ ଟଙ୍କା ମାତ୍ର**

# ପରମ ଶାସ୍ତ୍ର ଭାଗବତ

ଆମ୍ଭେମାନେ ବର୍ତ୍ତମାନ ସମୟର ଏପରି ଏକ ସନ୍ଧିକ୍ଷଣରେ ପହଞ୍ଚିଛନ୍ତି ଯେ, ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ପ୍ରତ୍ୟେକ ବ୍ୟକ୍ତି ନିଜର ଅନୁଭବକୁ ଆଧାର କରି ଯଦି ଆତ୍ମ ସମୀକ୍ଷା କରିବେ ତେବେ ସମାଜର ସବୁ ସ୍ତରରେ କ'ଣ ଘଟୁଛି ତାହା ଜାଣି ପାରିବେ । ଧର୍ମ ଜ୍ଞାନ ତ ଦୂରର କଥା ନିଜର ଆଚରିତ କର୍ମରେ ଶିଷ୍ଟାଚାରର ରକ୍ଷା-କରିବା—ମଧ୍ୟ ଅନେକଙ୍କ ପକ୍ଷରେ ସମ୍ଭବ ହେଉ ନାହିଁ । ଲଗାମ୍ ନାହିଁ, ଘୋଡ଼ା ଦୌଡ଼ୁଛି । ସିଏ କୁଆଡେ ଯିବ ସିଏ ନିଜେବି ଯାଣେନା । କାରଣ ସେ ଲଗାମ ବିହୀନ ।

ଏଇ ପରିପ୍ରେକ୍ଷୀରେ ମୋର ଗୁରୁ ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ରଙ୍କର ଏଇ ପୁସ୍ତକ ଖଣ୍ଡିକ ପାଠ କରି ମୁଁ ଯେଉଁ ଆନନ୍ଦ ପାଇଲି ତାହା ଅବର୍ଣ୍ଣନୀୟ । ସମସ୍ତ ଭାଗବତ ତତ୍ତ୍ୱକୁ ସେ ସଂକ୍ଷେପରେ ଅଥଚ ସରଳ ଭାଷାରେ ପ୍ରକାଶ କରିଛନ୍ତି । ସାଧାରଣ ଲୋକେ ଓ ଶିକ୍ଷିତ ଯୁବକମାନେ ଏହି ପୁସ୍ତକରୁ ଜୀବନ ଦର୍ଶନର ମାର୍ଗ ଖୋଜି ପାଇବେ । ଏହା କେବଳ ଭାଷା ଦୃଷ୍ଟିରୁ ନୁହଁ ବରଂ ଭାବ ପ୍ରକାଶ ଦୃଷ୍ଟିରୁ ଅତ୍ୟନ୍ତ ହୃଦୟଗ୍ରାହୀ ହୋଇଛି । ଏହି ପୁସ୍ତକ ଖଣ୍ଡିକ ପ୍ରକାଶ କରି ଶ୍ରୀଯୁକ୍ତ ମିଶ୍ର ଏକ ଧାର୍ମିକ ପରିବେଶ ଭିତରକୁ ପାଠକମାନଙ୍କୁ ନିଶ୍ଚିତଭାବେ ନୁହାଁଇ ନେବେ"—ଏଥିରେ ସନ୍ଦେହ ନାହିଁ ।

**ଚନ୍ଦ୍ରମଣି ପଣ୍ଡା**

ଆଡ୍‌ଭୋକେଟ୍, ଯାଜପୁର

# ନିଜଆଡ଼ୁ ପଦେ

ମନୁଷ୍ୟ ଜନ୍ମ ଏକ ଦୁର୍ଲଭ ଜନ୍ମ । ବହୁ ଜନ୍ମପରେ ପୂର୍ବ ଜନ୍ମର ପୁଣ୍ୟ କର୍ମର ଫଳ ସ୍ୱରୂପ ଭଗବାନଙ୍କ କୃପାରୁ ଆମ୍ଭେମାନେ ମନୁଷ୍ୟ ଜନ୍ମ ପାଇଛନ୍ତି । କିନ୍ତୁ ମନୁଷ୍ୟ ଏ ଜନ୍ମର ମହତ୍ ଉଦ୍ଦେଶ୍ୟ ବୁଝି-ପାରୁନାହିଁ । ଯେ ଗୀତା, ଭଗବତ, ଉପନିଷଦ, ପୁରାଣ ପ୍ରଭୃତି ଧର୍ମ-ଗ୍ରନ୍ଥ ନ ପଢିଛି ସେ ଯେ ପଶୁ ପକ୍ଷୀଙ୍କ ସହିତ ସମାନ କହିଲେ ଅତ୍ୟୁକ୍ତି ହେବନାହିଁ । ସ୍କୁଲ କଲେଜରେ ଏ ବିଦ୍ୟା ପଢାଯାଏନାହିଁ । ତେଣୁ ସମାଜରେ ଭ୍ରଷ୍ଟାଚାର, ଧର୍ଷଣ, ହତ୍ୟା, ଡକାୟତି, ବ୍ୟଭିଚାର ପ୍ରଭୃତି ପାପକାର୍ଯ୍ୟ କରିବାକୁ ଲୋକେ କୁଣ୍ଠାବୋଧ କରୁନାହାନ୍ତି । ମୁଁ ଓଡ଼ିଶାର ବହୁ ସ୍ଥାନରେ ବହୁକାଳ କଟାଇ ଯେଉଁ ଅଭିଜ୍ଞତା ଅର୍ଜନ କରିଛି ସେଥିରୁ ମୋର ବିଶ୍ୱାସ ଯେ ଲୋକ ମାନଙ୍କୁ ଆଧ୍ୟାତ୍ମିକ ଶିକ୍ଷା ଦିଆନଯିବାରୁ ଏପରି ବ୍ୟଭିଚାର ବଢି ବଢି ଚାଲିଛି । ତେଣୁ କେବଳ ପ୍ରଚାର ଉଦ୍ଦେଶ୍ୟ ରଖି ଏ ଭଗବତଟି ଲେଖିଛି । ମୁଁ ବହୁ ଧର୍ମଶାସ୍ତ୍ର ତଥା ଗୀତା, ଭଗବତ, ପୁରାଣ ଆଦି ପଢିଛି । ମୋର ବିଶ୍ୱାସ ଯଦି ଛୁଆ ବଚ୍ଚାରୁ ଏହି ଗୀତା ଭଗବତ ପ୍ରଭୃତି ପିଲମାନେ ଶିକ୍ଷା କରନ୍ତେ । ତେବେ ସେମାନେ କଦାପି କୁକର୍ମରେ ଲିପ୍ତ ହୁଅନ୍ତେ ନାହିଁ ଏବଂ ସେମାନେ ଭଗବାନଙ୍କର ଆଶୀର୍ବାଦ ଲଭ କରିପାରନ୍ତେ ତେଣୁ ସେମାନଙ୍କର ମନୁଷ୍ୟ ଜନ୍ମ ସାର୍ଥକ ହୁଅନ୍ତା । ମୋର ବିନୀତ ଅନୁରୋଧ ଆପଣ ଏ ଭଗବତକୁ ନିଜେ ବାରମ୍ବାର ପଢନ୍ତୁ ଓ ଅନ୍ୟ ମାନଙ୍କୁ ପଢିବାକୁ କୁହନ୍ତୁ । ଏ ବହିଟିର ମୂଲ୍ୟ ମାତ୍ର ଦଶଟଙ୍କା କରାଯାଇଛି । ଯଦି କେହି ଭଗବତ ପ୍ରେମୀ କିଣିବାକୁ ଅସମର୍ଥ ହୁଅନ୍ତି ତେବେ ସେମାନଙ୍କୁ ଅଧାମୂଲ୍ୟରେ ମଧ୍ୟ ଯୋଗାଇ ଦିଆଯିବ । ଇତି

ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର

# ପରିଚୟ

ମୁଁ ଜଣେ ଅବସରପ୍ରାପ୍ତ ଶିକ୍ଷକ । ବାଲ୍ୟବସ୍ଥାରୁ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ଜୀବନରେ ବହୁ ଦୁଃଖ, କଷ୍ଟ, ବାଧା ବିଘ୍ନ ସହ୍ୟ କରି ଓଡ଼ିଶାର ବିଭିନ୍ନ ସ୍ଥାନରେ ମାଇନର ସ୍କୁଲ, ହାଇସ୍କୁଲରେ ଶିକ୍ଷକତା କରି ଆସିଛି । ଆଠମଲ୍ଲିକରେ ଶିକ୍ଷକତା କରିବା ସମୟରେ ପ୍ରାଇମେରୀ ସ୍କୁଲର ପରିଦର୍ଶକ ରୂପେ ୨ ବର୍ଷ ଚାକିରୀ କରିବା ପରେ ଯାଜପୁର ବିରଜା ହାଇସ୍କୁଲରେ ୭ ବର୍ଷ ଶିକ୍ଷକତା କରିଥିଲି । ଏହାପରେ ଓଡ଼ିଶାର ବିଭିନ୍ନ ଖଣି ମାନଙ୍କରେ ସୁପରଭାଇଜିଙ୍ଗ କାମ ୭/୮ ବର୍ଷ କରିବା ସମୟରେ ମାରାତ୍ମକ ଆକସ୍ମିକ ଦୁର୍ଘଟଣାରେ ବହୁଯନ୍ତ୍ରଣା ଭୋଗ କରିବାପରେ ଆଖଣ୍ଡଳମଣି ଓ ସାଇବାବାଙ୍କର କୃପାରୁ ସେଥିରୁ ମୁକ୍ତହୋଇ ଶେଷରେ ଯାଜପୁରର ବାହାବଳପୁର ମାଇନର ସ୍କୁଲର ଶିକ୍ଷକତା ୧୬ ବର୍ଷ କଲାପରେ ୬୦ ବର୍ଷରେ ଅବସର ଗ୍ରହଣକରି ଏବେ ଘରେ ସୁସ୍ଥ ଶରୀରରେ ଆଧ୍ୟାତ୍ମିକ ଚିନ୍ତାରେ ଜୀବନ ଯାପନ କରୁଛି । ମୋର ପିତା ✓ ଶୁକଦେବ ମିଶ୍ର ଜଣେ ଭାଗବତ ପ୍ରେମୀ ଥିଲେ । ସେ କଲିକତାରେ ଗଙ୍ଗା ନଦୀ କୂଳରେ ଜଗନ୍ନାଥ ମନ୍ଦିରଟିଏ ନିର୍ମାଣ କରି

ଜୀବିକା ଅର୍ଜନ କରୁଥିବା ବେଳେ ମୁଁ ତାଙ୍କ ପାଖରେ ରହି ସେହିଠାରୁ ମେଟ୍ରିକ୍ ଫଷ୍ଟ ଡ଼ିଭିଜନରେ ପାଶ କଲାପରେ ଘରକୁ ଫେରିଆସି ପରିବାର ପୋଷଣ ପାଇଁ ଚାକିରି କରିବାକୁ ପଡ଼ିଥିଲା । କଲିକତାରେ ବାପାଙ୍କ ପାଖରେ ଥିବାବେଳେ ଗୀତା, ଭଗବତର ପ୍ରଭାବ ମୋ ଉପରେ ପଡ଼ିଥିଲା । ଘରେରହିବା ଅବସ୍ଥାରେ ଗୋଟିଏ ଭଗବତଟୁଙ୍ଗୀ କରି ସେଥିରେ ଗୀତା ଭଗବତ ପ୍ରଭୃତି ଧର୍ମ ଶାସ୍ତ୍ର ରଖି ପ୍ରତିଦିନ ପଢେ ଓ ପଢି ଅନ୍ୟମାନଙ୍କୁ ଶୁଣାଏ । କିନ୍ତୁ ମୁଁ ଅନୁଭବ କରିଛି ଯେଉଁମାନେ ଗୀତା ଭଗବତ ଶୁଣନ୍ତି ସେମାନେ ଭଗବତ ପଢା ହେଉଥିବା ପର୍ଯ୍ୟନ୍ତ ଶୁଣନ୍ତି । ତାପରେ ସବୁ ଏ କାନରେ ପଶି ସେ କାନରେ ବାହାରିଯାଏ । ଗୀତା ଭଗବତର ପ୍ରଭାବକିଛି ତାଙ୍କ ଉପରେ ପଡ଼େନାହିଁ ।

ଓଡ଼ିଶାରେ ବହୁ ସ୍ଥାନରେ ଭଗବତ ଟୁଙ୍ଗୀ ଅଛି । ସେଠାରେ ବହୁ ଲୋକ ଭଗବତ ପଢ଼ନ୍ତି ବା ଶୁଣନ୍ତି । କିନ୍ତୁ ପଢୁଥିବା ବା ଶୁଣୁଥିବା ପର୍ଯ୍ୟନ୍ତ ଭକ୍ତିରେ ଗଦ ଗଦ ହେଉଥାନ୍ତି । ଘରକୁ ଯାଇଁ ସେ ସମସ୍ତ ଭୁଲିଯାଇ ସାଂସାରିକ କାମରେ ମାତିଥାନ୍ତି । ଆଜିକାଲି ସ୍କୁଲ କଲେଜ ମାନଙ୍କରେତ ଗୀତା, ଭଗବତ ପରି ଧର୍ମଗ୍ରନ୍ଥ ପଢ଼ା-ଯାଏ ନାହିଁ । ତେଣୁ ଛାତ୍ର, ଛାତ୍ରୀ, ଯୁବକ, ଯୁବତୀଙ୍କର ଆଧ୍ୟାତ୍ମିକଜ୍ଞାନ ନାହିଁ । ସ୍କୁଲ, କଲେଜରେତ ଅଜ୍ଞାନ ପାଠ ପଢାଯାଏ । ଜ୍ଞାନପାଠ ପଢାଯାଏ ନାହିଁ । ତେଣୁ ଲୋକେ ଭ୍ରଷ୍ଟାଚାରର ରହାଜାମା ଅପକର୍ମ

ଚୋରି ଡକାଏତ ପ୍ରଭୃତି ପାପ କାର୍ଯ୍ୟ କରିବାକୁ କୁଣ୍ଠାବୋଧ କରୁ-ନାହାନ୍ତି । ଯଦି ସେମାନଙ୍କର ସାମାନ୍ୟତମ ଆଧ୍ୟାତ୍ମିକଜ୍ଞାନ ଥାନ୍ତା ସେମାନେ କଦାପି ଏପରି ଅନ୍ୟାୟ କାର୍ଯ୍ୟ କରନ୍ତେ ନାହିଁ । ତେଣୁ ସେମାନଙ୍କ ମନରେ ଅମୂଲ୍ୟ ଆଧ୍ୟାତ୍ମିକ ଚେତନା କିପରି ସହଜରେ ଓ ଅଳ୍ପ ସମୟ ମଧ୍ୟରେ ଅଣାଯାଇ ପାରିବ ଚିନ୍ତା କରି ଏହି ଭଗବତ-ସାର ସଂଗ୍ରହ ପୁସ୍ତକଟି ଲେଖିଛି । ତେଣୁ ଆଶାକରେ ପ୍ରତ୍ୟେକ ଛାତ୍ର-ଛାତ୍ରୀ, ଯୁବକ, ଯୁବତୀ, ବୟସ୍କ,ପାଠୁଆ, ଅପାଠୁଆ ସମସ୍ତେ ଏହାକୁ ପଢିଲେ ନିଶ୍ଚିତ ରୂପେ ସେମାନଙ୍କ ମନରେ ଆଧ୍ୟାତ୍ମିକଜ୍ଞାନ ସୃଷ୍ଟି-ହେବ । ଫଳରେ ପ୍ରଭୁ କୃପାରୁ ଦୀର୍ଘ ଓ ସୁଖମୟ ଜୀବନ ଯାପନ କରି ଅନ୍ତିମ କାଳରେ ବିଷ୍ଣୁ ପାଦରେ ଲୀନ ହେବେ । ବିଶ୍ୱାସ କଲେ ଭଗବାନ ଆପଣଙ୍କ ନିକଟରେ ଅଛନ୍ତି । ସନ୍ଦେହୀ ଲୋକଠାରୁ ଭଗବାନ ଦୂରରେ ରହନ୍ତି । ତେଣୁ ମୋର ଅନୁରୋଧ ଆପଣ ନିଜେ ଇଶ୍ୱରଙ୍କ ଠାରେ ଦୃଢ଼ ବିଶ୍ୱାସ ରଖି ଏହି ଭଗବତକୁ ପଢନ୍ତୁ ଏବଂ ଅନ୍ୟମାନଙ୍କୁ ପଢିବା ପାଇଁ କହନ୍ତୁ । ଇତି ।

ସଂଗ୍ରାହକ
**ଶ୍ରୀ କୃଷ୍ଣ ଚନ୍ଦ୍ର ମିଶ୍ର**
ଅବସରପ୍ରାପ୍ତ ଶିକ୍ଷକ

# କୃତଜ୍ଞତା ଜ୍ଞାପନ

ଏ ପୁସ୍ତକ ଛପା ହେବା ପୂର୍ବରୁ ଏହାର ପାଣ୍ଡୁଲିପି କେତେ ସୁଧୀ ବୃନ୍ଦ ପଢ଼ିଛନ୍ତି ଏବଂ ଏହାର ଆଧ୍ୟାତ୍ମିକ ଭାବ ଧାରରେ ସନ୍ତୋଷ ପ୍ରକାଶ କରି ମୋତେ ଏ ବହିଟି ଛପାଇବା ପାଇଁ ବାରମ୍ବାର ଅନୁରୋଧ କରିଛନ୍ତି । ବିଶେଷତଃ ଯାଜପୁରର ଜଣେ ବିଖ୍ୟାତ ଏଡ଼ଭୋକେଟ ସମ୍ପାଦକ ପତ୍ରିକା ସମ୍ପାଦକ ବାଗ୍ମୀ ଶ୍ରୀଯୁକ୍ତ ଚନ୍ଦ୍ରମଣି ପଣ୍ଡା ଏହାକୁ ପାଠକରି ତାଙ୍କର ନିଜର ମତ ପ୍ରକାଶ କରି ମୋତେ ଉତ୍ସାହିତ କରିଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ତାଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା ଜଣାଇ ତାଙ୍କର ଦୀର୍ଘ ଜୀବନ କାମନା କରୁଛି । ମୁଁ ଏ ଭଗବତ ସାର ସଂଗ୍ରହ ପ୍ରଶଂସା ବା ଟଙ୍କା ରୋଜଗାର କରିବା ଆଶାରେ ଲେଖିନାହିଁ । ଏହାକୁ ପଢ଼ି ଯଦି କେହି ଭଗବତ୍ କୃପା ଲାଭକରି ସତ୍‌କାର୍ଯ୍ୟ ଓ ସତ୍‌ପଥ ଅବଲମ୍ବନ କରିପାରେ ତାହାହିଁ ହେବ ମୋର ଲକ୍ଷ୍ୟର ସାର୍ଥକତା । ଇତି ।

ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର
ଅବସରପ୍ରାପ୍ତ ଶିକ୍ଷକ

ଓଁ ଶ୍ରୀମଦ୍‌ଭଗବତ

# ସଂକ୍ଷିପ୍ତ ସାରସଂଗ୍ରହ

# ପ୍ରଥମ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ମୂକଂକରୋତି ବାଚାଳଂ ପଙ୍ଗୁଲଙ୍ଘୟତେ ଗିରିଂ
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

ବନ୍ଦନା

ନମଇଁ ନୃସିଂହ ଚରଣ ଅନାଦି ପ୍ରଭୁ ନାରାୟଣ
ସତ୍ୟପରମାନନ୍ଦ ହରି ଯା ରୂପ ଧ୍ୟାୟୀ ଭବୁ ପାରି ।
ଯାଙ୍କ ଚରଣେ ନିତ୍ୟେଧ୍ୟାନ କରି ତରନ୍ତି ସାଧୁ ଜନ ।
ଏମନ୍ତ ସତ୍ୟ ରୂପ ଯାର ତା ପାଦେ କୋଟି ନମସ୍କାର

ବିଶେଷ କଥନ

ପ୍ରଭୁ ନାରାୟଣଙ୍କ ପାଦପଦ୍ମରେ କୋଟି ନମସ୍କାର ଜଣାଇ ଭକ୍ତ ପାଠକ ଭଗବତ ପ୍ରେମୀ ଶ୍ରୋତାମାନଙ୍କୁ ବୁଝାଇଲେ ଯେ କୌଣସି ଗୃହୀ ପାପାତ୍ମା ବା ପୂଣ୍ୟାତ୍ମା ହୋଇଥାଉ ସମସ୍ତ ସାଂସାରିକ କର୍ମକରି ମଧ୍ୟ ଯଦି ସେ ଦୈନିକ ନାରାୟଣଙ୍କ ନାମ ଥରେ ମାତ୍ର ମୁଖରେ ଉଚ୍ଚାରଣ କରି ଭକ୍ତିର ସହିତ ପ୍ରଣାମ କରେ ତେବେ ସେ ପୂର୍ବ ଜନ୍ମ ଓ ଏ ଜନ୍ମର ସମସ୍ତ ପାପରୁ ମୁକ୍ତ ହୋଇ ପୁଣ୍ୟାତ୍ମା ହୁଏ ଏବଂ ମୃତ୍ୟୁ ପରେ ଭଗବାନଙ୍କଠାରେ ଲୀନ ହୋଇ ବୈକୁଣ୍ଠରେ ବାସ କରେ ।

## ଋଷିମାନଙ୍କର ସୂତଙ୍କୁ ପ୍ରଶ୍ନ

ବେଦ ହିଁ ଗୀତା ଭାଗବତ ପୁରାଣ ଶୁଦ୍ଧ କରେ ଚିତ୍ତ ।
ଶୌନକ ଆଦି ଋଷିଗଣ ସୂତଙ୍କୁ ପୁଚ୍ଛିଲେ ଏସନ ।
ଏ କଳିଯୁଗେ ଯେତେ ପ୍ରାଣୀ ଅଳ୍ପ ଆୟୁଷ ପରିମାଣି ।
କହ କେମନ୍ତ ପ୍ରାଣୀଙ୍କର ଏ ଭବମାୟାରୁ ନିସ୍ତାର

### * ବିଶେଷ କଥନ *

ଯେତେବେଳେ ପରୀକ୍ଷିତ ମହାରାଜା ଋଷିପୁତ୍ରଦ୍ୱାରା ଅଭିଶପ୍ତ ହୋଇ ସାତଦିନଭିତରେ ସର୍ପାଘାତରେ ନିଶ୍ଚୟ ମୃତ୍ୟୁ ହେବବୋଲି ଜାଣିପାରିଲେ ଏବଂ ରାଜପଦ, ଧନସମ୍ପତ୍ତି, ପୁତ୍ରକଳତ୍ର ସମସ୍ତ ତ୍ୟାଗକରି ମନରେ ବୈରାଗ୍ୟଭାବ ଜାତ ହେବାରୁ ଗଙ୍ଗା ନଦୀ କୂଳରେ କୁଟି ଚିତ୍ତେ ରହି ତପସ୍ୟାରତ ହେଲେ । ସେତେବେଳେ ଅନେକ ରାଜା, ଋଷି, ଦେବଗଣ ତାଙ୍କର ଶେଷଦର୍ଶନ ପାଇଁ ସେଠାରେ ଏକତ୍ରୀତ ହୋଇଥିଲେ । ପରୀକ୍ଷିତଙ୍କୁ ସାନ୍ତ୍ୱନା ଦେବାପାଇଁ ଋଷୀମାନେ ସୂତ ମୂନିଙ୍କୁ ପଚାରିଲେ, କଳିଯୁଗରେ ଲୋକମାନେ ତ ଅଳ୍ପ ଆୟୁଷ ଓ ପାପୀ । କି ଉପାୟରେ ସେମାନେ ମୁକ୍ତି ପାଇବେ ? ସୂତ କହିଲେ ବେଦ ହିନ୍ଦୁମାନଙ୍କର ଧର୍ମଗ୍ରନ୍ଥ, ଏହି ବେଦରୁ ସାର ସଂଗ୍ରହ କରି, ଗୀତା, ଭାଗବତ, ପୁରାଣ ପ୍ରଭୃତି ଲେଖିବ । ଯେଉଁମାନେ ଏହି ଧର୍ମ ଗ୍ରନ୍ଥ ପଢନ୍ତି ବା ଶୁଣନ୍ତି ସେମାନେ ବେଦ ଓ ପୃଥିବୀର ସମସ୍ତ ଧର୍ମଗ୍ରନ୍ଥ ପାଠ କରିଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଗୀତା,

ଭାଗବତ, ପୁରାଣ ପାଠକଲେ ବା ଶୁଣିଲେ ଚିତ୍ତ ଶୁଦ୍ଧ ହୁଏ ଏବଂ ସମସ୍ତ ପାପରୁ ମୁକ୍ତ ହୋଇ ମୃତ୍ୟୁପରେ ଭଗବାନ ବିଷ୍ଣୁଙ୍କ ସହ ବୈକୁଣ୍ଠରେ ବାସ କରେ ।

ଋଷିମାନେ ପଚାରିବାରୁ ସୂତ କହିଲେ

କି ପ୍ରୟୋଜନ ଜଗନ୍ନାଥ ଦେବକୀ ଉଦରେ ସମ୍ଭୁତ ।
ହେ ବ୍ୟାସ ପରାଶର ସୂତ କହ କୃଷ୍ଣ ଗୁଣ ଚରିତ ।
କୃଷ୍ଣ ଜନମି ଯାହା କଲେ ବ୍ୟାସ ତା ନାରଦେ କହିଲେ ।
ଭୂମିର ଭାର ନାଶ ଅର୍ଥେ କୃଷ୍ଣର ଜନମ ଏ ଜଗତେ ।
ଅଧର୍ମ ବୃଦ୍ଧି ହୁଏ ଯଦି ସେ ଅବତରେ ଯଥାବିଧି ।
ଦୁଷ୍ଟ ନିବାରି ସନ୍ଥପାଳେ ଧର୍ମ ସ୍ଥାପଇ କାଳେ କାଳେ ।
ବାସୁଦେବଙ୍କଠାରେ ଯେବେ ଭକ୍ତି ଉଦୟ ହୁଏ ତେବେ ।
ଜ୍ଞାନ ବୈରାଗ୍ୟ ଜାତ ହୁଏ ଶୁଷ୍କ ତର୍କାଦି ନାଶ ଯାଏ ।
କୃଷ୍ଣେ ଭକତି ଯାର ମତି ବଦନେ ମହିମା କହନ୍ତି ।
ତାହାଙ୍କ ହୃଦେ ହରି ବସେ ସର୍ବ ଅଶୁଭ ଫଳ ନାଶେ ।

* ବିଶେଷ କଥନ *

ପୂର୍ବ ଜନ୍ମର ସତ୍‌କର୍ମ ଅନୁସାରେ ଏ ଜନ୍ମରେ ପ୍ରଭୁକୃପା ଯାହା ଉପରେ ପଡେ ତା ମନରେ ଆଧ୍ୟାତ୍ମିକଭାବ ଜାତ ହୁଏ । ତେଣୁ ସେ ବୃଥା ତର୍କ ନକରି ଭଗବାନଙ୍କୁ ଦୃଢ ବିଶ୍ୱାସ କରେ । ସେ ସାରାଜୀବନ

ଭଗବାନଙ୍କ ପୂଜା, ଭଜନ, ଉପାସନା ଆଦି ସତ୍‌କର୍ମ କରେ । ଦୁଷ୍ଟ-ମାନଙ୍କୁ ସଂହାରକରି ସନ୍ଥମାନଙ୍କୁ ପାଳନ କରି ପୃଥିବୀରେ ଶାନ୍ତି ସ୍ଥାପନ କରିବାପାଇଁ ଭଗବାନ ମନୁଷ୍ୟ ରୂପରେ ଅବତାର ଗ୍ରହଣ କରନ୍ତି ।

ସକଳ ହୃଦେ ହରିବସେ କ୍ଷେତ୍ରଜ୍ଞରୂପେ ପରକାଶେ ।
କର୍ମ କର ବିକର୍ମ ତେଜି ଫଳର ଆଶା ଦୃଢେ ତେଜି ।
ଫଳର ଆଶା ଯଦି ନାହିଁ ବିଘ୍ନ ପଶିବ ଅବା କାହିଁ ।

* ବିଶେଷ କଥନ *

ଭଗବାନ ସମସ୍ତଙ୍କ ହୃଦୟରେ ସମାନରୂପେ ଅଛନ୍ତି । ଏ ଦେହକୁ କ୍ଷେତ୍ର କୁହାଯାଏ । ଭଗବାନଙ୍କୁ କ୍ଷେତ୍ରଜ୍ଞ କୁହାଯାଏ । ଭଗବାନ ସମସ୍ତଙ୍କ ହୃଦୟରେ ରହି ସାକ୍ଷୀରୂପେ ସବୁ ଦେଖୁଛନ୍ତି । ତେଣୁ ପ୍ରତ୍ୟେକ ଲୋକ ସତ୍‌କର୍ମ କରିବା ଉଚିତ । କର୍ମ ୩ ପ୍ରକାର ଯଥା —

କର୍ମ—ଅକର୍ମ ଓ ବିକର୍ମ । କର୍ମ—ଭଗବାନଙ୍କର ପୂଜା, ଉପାଶନା ଭଜନ ଇତ୍ୟାଦିକୁ କୁହାଯାଏ ।

ଅକର୍ମ—କର୍ମ ନ କରିବାକୁ ଅକର୍ମ କୁହାଯାଏ । ଅର୍ଥାତ୍ ଭଗବତ୍ କର୍ମ ଛଡ଼ା ଆଉ ସବୁ କାର୍ଯ୍ୟକୁ ଅକର୍ମ କୁହାଯାଏ ।

ବିକର୍ମ—ଶାସ୍ତ୍ର ବିରୁଦ୍ଧ କାର୍ଯ୍ୟକୁ ବିକର୍ମ କୁହାଯାଏ । ତେଣୁ ପ୍ରତ୍ୟେକ ଲୋକ ଫଳର ଆଶା ନରଖି କର୍ମ କରିବା ଉଚିତ । ଫଳର ଆଶା ରଖି କର୍ମ କଲେ ତାହା ଅକର୍ମ ହୋଇଯାଏ । ଫଳର ଆଶା ନ ରଖି

କର୍ମ କଲେ ମଧ କୌଣସି ବାଧା ବିଘ୍ନ ଘଟେ ନାହିଁ, ଏବଂ ତାହା ମଙ୍ଗଳକର ହୁଏ । ଦେବ କାର୍ଯ୍ୟକୁ କର୍ମ କୁହାଯାଏ । ସାଂସାରିକ କର୍ମକୁ ଅକର୍ମ କୁହାଯାଏ । ଅକର୍ମରେ କିଛି କର୍ମ ଲୁଚି ରହିଥାଏ । ମନୁଷ୍ୟ ତାହା ଜାଣିପାରେ ନାହିଁ । ଯଦି ଜାଣିପାରନ୍ତା ସାଂସାରିକ ସମସ୍ତ ଅକର୍ମ କରି ମଧ ପୁଣ୍ୟ ଅର୍ଜନ କରିପାରନ୍ତା । ତେଣୁ ଦେବ ସେବା, ଯଜ୍ଞ, ଦାନ ଆଦି କର୍ମ କରିବା ଉଚିତ ଅକର୍ମ ଅର୍ଥାତ୍ ସମସ୍ତ ସାଂସାରିକ କାର୍ଯ୍ୟ କରିବା ଉଚିତ୍ । କିନ୍ତୁ ଅଧିକାଂଶ ଲୋକ ଅକର୍ମ ଓ ବିକର୍ମ କରନ୍ତି କାହିଁକି ? ଏହାର ଉତ୍ତରପୂର୍ବ ଜନ୍ମର କର୍ମଫଳ ସ୍ୱରୂପ ଏ ଜନ୍ମରେ କାର୍ଯ୍ୟକୁ କରିବାକୁ ବାଧହୁଏ । ଅଦୃଶ୍ୟ ଶକ୍ତି ବଳରେ ମନୁଷ୍ୟ ସବୁ କାର୍ଯ୍ୟ କରେ, ସେ ନିଜେ କିଛି କରେ ନାହିଁ କି କରିପାରିବ ନାହିଁ । ମନୁଷ୍ୟ ମାୟାବଦ୍ଧଥିବାରୁ ସେ ନିଜେ ସବୁ କାର୍ଯ୍ୟ କରୁଛି ବୋଲି ଭାବେ ।

## ମାୟାବୀ ଶ୍ରୀକୃଷ୍ଣ

ନିର୍ଦ୍ଦୋଷ ପ୍ରାଣୀକୁ ଯେ ହିଂସେ     ସେ ନିଜ ଆତ୍ମା ନିଜେ ନାଶେ
ବାଳ ବନିତା ନିଦ୍ରାଗତ     ଶରଣାଗତ ଯେ ଶଙ୍କିତ ।
ଏହାଙ୍କୁ ବଧ ଯେ କରନ୍ତି     ଜୀବନ ଥାଉଁ ସେ ମରନ୍ତି ।
ଜୀବନ୍ତମୃତ ତାକୁ କହି     ଅନ୍ତେ ନରକେ ସେ ପଡ଼ଇ ।
ଦ୍ରୌପଦୀ ପୁତ୍ର ଶୋକ ବେଳେ     ଅର୍ଜ୍ଜୁନ ପ୍ରତିଜ୍ଞା ଯେ କଲେ ।
ଅଶ୍ୱତ୍ଥମାର ମୁଣ୍ଡକାଟି     ଥୋଇବି ତୋପାଦେ ଗୋସାଣି ।

ପୁତ୍ର ମରଣେ ମାତୃ ମନ	ମା’ ବିନୁ କେ ଜାଣିବ ଆନ ।
ଦ୍ରୌପଦୀ ତାକୁ କ୍ଷମା ଦେଲା	ନ କାନ୍ଦୁ ତା ମାତା ବୋଇଲା ।
ମୋ ପରି ନ କାନ୍ଦୁ ତା ମାତା	ଗୁରୁ ଆମ୍ଭର ତାର ପିତା ।
କୃଷ୍ଣ ଜାଣିଲେ କୃଷ୍ଣା ମନ	ମାୟା ଭିଆଣ ନାରାୟଣ ।
କୃଷ୍ଣ ଅର୍ଜ୍ଜୁନେ ଅଦେଶିଲେ	ତୋର ପ୍ରତିଜ୍ଞା ରଖ ଭଲେ ।
ଶସ୍ତ୍ରେ ଏହାର ତେଜ ହର	ଜୀବନ୍ତମୃତ ପ୍ରାୟେ କର ।
ଅର୍ଜ୍ଜୁନ କରି ଦୃଢ ମୁଷ୍ଟି	ମଣି ସହିତେ ଶିଖା କାଟି
ଆଣି ସ୍ଥାପିଲା ବାହୁ ବଳେ	ଦ୍ରୌପଦୀ ଦେବୀ ପାଦ ତଳେ ।
ମଣିହରଣେ ତେଜ ଗଲା	ନଗ୍ରରୁ ଲଜ୍ଜେ ପଳାଇଲା ।
ଅଶ୍ୱତ୍‌ଥମା ଯେ ବନେ ଗଲା	ଦ୍ରୌପଦୀ ମନ ଶାନ୍ତ ହେଲା ।

* ବିଶେଷ କଥନ *

ବାଳକ, ସ୍ତ୍ରୀ ନିଦରେ ଶୋଇଥିବା ଲୋକ, ଭୟାର୍ତ୍ତ, ନିର୍ଦ୍ଦୋଷ ପ୍ରାଣୀଙ୍କୁ ଯେ ହତ୍ୟା କରେ ତାକୁ ଜୀବିତ ଶବ ବୋଲି କୁହାଯାଏ ଏବଂ ମୃତ୍ୟୁପରେ ସେ ନର୍କରେ ପଡ଼େ । ମହାଭାରତ ଯୁଦ୍ଧବେଳେ ଗୁରୁ ଦ୍ରୋଣଙ୍କର ପୁତ୍ର ଅଶ୍ୱତ୍‌ଥମା ଦ୍ରୌପଦୀଙ୍କର ପାଞ୍ଚପୁଅ ନିଦରେ ଶୋଇ ଥିଲାବେଳେ ହତ୍ୟା କରିଥିଲା । ତେଣୁ ଅର୍ଜ୍ଜୁନ ଦ୍ରୌପଦୀଙ୍କର ବିକଳ କ୍ରନ୍ଦନରେ ଅସ୍ଥିର ହୋଇ ପ୍ରତିଜ୍ଞା କରିଥିଲେ ଅଶ୍ୱତ୍‌ଥମାର ମୁଣ୍ଡକାଟି ଦ୍ରୌପଦୀଙ୍କର ପାଦତଳେ ଥୋଇବେ । ଅର୍ଜ୍ଜୁନଙ୍କର ପ୍ରତିଜ୍ଞା ଶୁଣି ପୁତ୍ରଶୋକାତୁର ଦ୍ରୌପଦୀ ତାଙ୍କୁ ଏପରି କର୍ମ ନ କରିବାପାଇଁ ବିନୀତ

ଅନୁରୋଧ କଲେ ଏବଂ କହିଲେ ପୁତ୍ରର ମରଣରେ ମାଆର ମନ ଦୁଃଖରେ ଯାହା ହୁଏ, ତା ମା ଛଡା ଆଉ କେହି ବୁଝି ପାରିବେ ନାହିଁ । ଆଜି ମୁଁ ଯେପରି କାନ୍ଦୁଛି ତାର ମା ସେପରି ନ କାନ୍ଦୁ । ମାୟାଭିଆଣ ଶ୍ରୀକୃଷ୍ଣ ଦ୍ରୌପଦୀଙ୍କର ମନ ବେଦନା ବୁଝିପାରି ଅର୍ଜ୍ଜୁନଙ୍କୁ ତାଙ୍କର ପ୍ରତିଜ୍ଞା ରକ୍ଷା କରିବାକୁ କହିଲେ । ଅଶ୍ୱତ୍‌ଥମାର ମୁଣ୍ଡ ନକାଟି ତାର ତେଜ ହରଣ କରି ଦ୍ରୌପଦୀଙ୍କ ପାଦତଳେ ସ୍ଥାପନ କର । ଅର୍ଜ୍ଜୁନ ବୀରଦର୍ପରେ ଅଶ୍ୱତ୍‌ଥମାକୁ ଲଣ୍ଡାକରି ମୁହଁରେ ଚୂନକାଳି ବୋଳି, ମଣି ହରଣ କଲେ ଏବଂ ଅଶ୍ୱତ୍‌ଥମାକୁ ଜୀବନ୍ତ ଶବ ପ୍ରାୟ କରି ଦ୍ରୌପଦୀଙ୍କ ପାଦତଳେ ସ୍ଥାପନ କଲେ । ଅଶ୍ୱତ୍‌ଥାମା ଲଜ୍ୟାରେ ଘରକୁ ନଯାଇ ବଣକୁ ପଳାଇଲା । ତେଣୁ ଦ୍ରୌପଦୀର ମନ ଶାନ୍ତ ହେଲା ।

ଇତି ପ୍ରଥମ ସ୍କନ୍ଦ ସମାପ୍ତ

ଓଁ ନମୋ ଭଗବତେ ବାସୁଦେବାୟ

*

# ଦ୍ୱିତୀୟ ସ୍କନ୍ଧ

ନାରାୟଣଂ ନରଂଚୈବ ନରୋତ୍ତମଂ
ଦେବୀ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦିରୟେତ୍
ମୂକଂକରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରି
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

## ଉଦ୍ଧବଙ୍କୁ ଶ୍ରୀକୃଷ୍ଣଙ୍କର ଉପଦେଶ

ଗୋବିନ୍ଦ ଗୋବିନ୍ଦ ଗୋବିନ୍ଦ    ପଦ୍ମୁ ଗଳୁଛି ମକରନ୍ଦ
ସେ ମକରନ୍ଦ ପାନ କରି    ଆନନ୍ଦେ ବୋଲ ହରି ହରି ।
ସେ ଚକାଡ଼ୋଳାଙ୍କ ପୟରେ    ମନ ମୋ ଥାଉ ନିରନ୍ତରେ ।
ମନ ମୋ ଥାଉ ନିରନ୍ତରେ ଥାଉ    ତା ନାମ ଭଜି ଜୀବ ଯାଉ ।
ବୁଝି ବିଚାରି କର୍ମ କଲେ    ବିପଦ ନ ପଡ଼ଇ ଭଲେ ।
ବିଶ୍ୱାସ ମୂଳେ ଭଗବାନ    କର ନିରତେ ତାଙ୍କୁ ଧ୍ୟାନ
କର୍ମ ତୋହର ନିଜ ଗୁରୁ    ଉଦ୍ଧବ କେତେ ତୁ ପଚାରୁ ।

## ବିଶେଷ କଥନ

ଗୋବିନ୍ଦ, ବିଷ୍ଣୁ ବା ନାରାୟଣ ନାମ ଯେ ସବୁବେଳେ ମୁଖରେ ଉଚ୍ଚାରଣ କରୁଥାଏ ସେ ସମସ୍ତ ପାପରୁ ମୁକ୍ତ ଏବଂ ନାମ ଭଜୁ ଭଜୁ ଯଦି ମୃତ୍ୟୁ ହୁଏ ସେ ବିଷ୍ଣୁପାଦରେ ଲୀନ ହୁଏ । ଭଗବାନଙ୍କୁ ଦୃଢ଼ ବିଶ୍ୱାସ କରି ତାଙ୍କୁ ଧ୍ୟାନ କର, ସେ ନିଶ୍ଚୟ ଦେଖା ଦେବେ । ତେଣୁ ବୁଦ୍ଧି ବିବେକ ସହିତ ବିଚାର କରି ସର୍ବଦା ସତ୍କର୍ମ କର—କର୍ମ ଅନୁସାରେ ଫଳ ମିଳେ । ତୁମର କର୍ମ ତୁମର ନିଜର ଗୁରୁ ।

## ଦୁର୍ଲଭ ମନୁଷ୍ୟ ଜନ୍ମ

ଖ୍ରୀଷ୍ଟଙ୍କ ଉପଦେଶ ବାଣୀ — ପସ୍ପକ୍ଷେ ଶୁଣାଇଲେ ପୁଣି
ଅନେକ ଜନ୍ମ କର୍ମ ଫଳେ — ମନୁଷ୍ୟ ଜନ୍ମ ମହୀତଳେ ।
ମନୁଷ୍ୟ ଦେହେ ଦିବ୍ୟଜ୍ଞାନ — ଦେଖି ସନ୍ତୋଷ ଭଗବାନ ।
କର୍ତ୍ତବ୍ୟ କର୍ମେ ମହି ଦୁଃଖ — କେବେହେଁ ନହୁଅ ବିମୁଖ
କର୍ମ କଷଣ ବହି ଧୀରେ — ବଞ୍ଚିବ ପର ଉପକାରେ ।
ଧନ ଧରମ ସେବାଫଳେ — କିବା ଅସାଧ୍ୟ ମହୀତଳେ ।
ଧନ ଅର୍ଜିଲେ ଧର୍ମ କରି — ଧର୍ମେ ପ୍ରାପତ ନରହରି ।



### * ବିଶେଷ କଥନ *

ପୂର୍ବ ଜନ୍ମରେ ବହୁ ପୁଣ୍ୟ ଅର୍ଜନ କରିଥିଲେ ଏ ଜନ୍ମରେ ମନୁଷ୍ୟ ଜନ୍ମ ମିଳେ । ମନୁଷ୍ୟ ଜନ୍ମହିଁ ଭଗବାନଙ୍କର ଶ୍ରେଷ୍ଠ ସୃଷ୍ଟି । ଦିବ୍ୟଜ୍ଞାନ କେବଳ ମନୁଷ୍ୟଙ୍କ ଠାରେ ଅଛି । ସମସ୍ତ କଷ୍ଟ ସହି କର୍ତ୍ତବ୍ୟ କର । ପରର ଉପକାର କର । ଧନ, ଧର୍ମ ଓ ସେବା ଫଳରେ ତୁମେ ଅସାଧ୍ୟ କାର୍ଯ୍ୟ ମଧ୍ୟ କରି ପାରିବ । ଯେଉଁମାନେ ଧନୀ ବା ଧନଅର୍ଜନ କରୁଛନ୍ତି ସେମାନେ ପୁଣ୍ୟକାର୍ଯ୍ୟ କରି ପରୋପକାର କଲେ, ସେମାନେ ଭଗବତ କୃପା ଲାଭ କରନ୍ତି ।

## ସତ୍ ପୁତ୍ରର କର୍ତ୍ତବ୍ୟ

ଯେ ବାକ୍ୟ ବୋଲେ ପିତା ମାତା ଯେ ପୁତ୍ର କରେ ତା ସର୍ବଥା
ତାରେ ସନ୍ତୋଷ ସର୍ବଦେବ ତାକୁ ନଦଣ୍ଡେ ଦଇବ ।
କର୍ମେ ଈଶ୍ୱର ଯାହାଦେବ ସନ୍ତୋଷେ ଉଦର ପୋଷିବ ।

### * ବିଶେଷ କଥନ *

ଯେଉଁ ପୁତ୍ର ପିତା ମାତାଙ୍କର ଆଦେଶ ଓ ଉପଦେଶ ଆନନ୍ଦରେ ପାଳନକରେ ତାକୁ ଦୈବଦଣ୍ଡ ହୁଏନାହିଁ । ଯେଉଁମାନେ ଟଙ୍କା ରୋଜଗାର କରୁଛନ୍ତି, ସେମାନେ ଭାବନ୍ତି ସେ ନିଜେ ରୋଜଗାର କରୁଛନ୍ତି । ମନୁଷ୍ୟର ଗୋଟିଏ ପଇସା ରୋଜଗାର କରିବାର ଶକ୍ତି ନାହିଁ । ଈଶ୍ୱର ବା ଅଦୃଶ୍ୟ ଶକ୍ତି ଅନେକ ସତ୍‌ଉପାୟରେ ଆଗରୁ ଠିକ୍ କରି ସାରିଥାନ୍ତି । କାହା ଭାଗ୍ୟରେ କେତେ ଓ କେଉଁ ଦଣ୍ଡ ମିଳେ । ସତ୍‌କର୍ମ କରି ସତ୍ ଉପାୟରେ ଯେତିକି ରୋଜଗାର କରି ପାରିବ ସେତିକି ସନ୍ତୁଷ୍ଟ ରହିବା ଉଚିତ୍ ।

ଦ୍ୟୁତ ଯୁବତୀ ମଦ୍ୟପାନେ କଦାପି ନଚିନ୍ତିବ ମନେ ।
ଦୁଃଖେ ସଞ୍ଚିତ ଯେତେ ଧନ ସେ ନୁହେଁ ସୁଖେ ପ୍ରୟୋଜନ
ଅମୃତ ବିନୟ ବଚନ କହି ତୋଷିବ ଜନମନ ।
ପରମ ଶାସ୍ତ୍ର ଭାଗବତ ଅଭ୍ୟାସ କରୁଥିବ ନିତ୍ୟ ।



* ବିଶେଷ କଥନ *

ଘୃଣା, ନାରୀ, ମଦ୍ୟ ଏ ତିନୋଟିକୁ ପରିତ୍ୟାଗ କର । ଏହି ପାପକାର୍ଯ୍ୟ ଯେ କରେ ସେ ନର୍କ ଭୋଗକରେ । ବହୁଲୋକ ବହୁ କଷ୍ଟ-କରି ଟଙ୍କା ସଞ୍ଚୟ କରନ୍ତି । କିନ୍ତୁ ସେ ଧନ ଅନ୍ୟ ଜଣେ ଭୋଗକରେ । କାହାରି ମନରେ କଦାପି କଷ୍ଟ ଦିଅନାହିଁ । ନିଜେ ଆନନ୍ଦିତ ରହି ସମସ୍ତଙ୍କୁ ମଧୁର କଥା କହି ବିନୀତ ଭାବରେ ସନ୍ତୁଷ୍ଟ କର ନିଜେ ହସ ଓ ସମସ୍ତଙ୍କୁ ହସାଅ ।

ମୋହ ଗ୍ରସ୍ତ ଗୃହୀ

ସଂସାର କରିବା ଆଶେ    ଯେତେ ଅଛନ୍ତି ଗୃହ ବାସେ ।
ଇନ୍ଦ୍ରିୟ ବଶେ ଗୃହେ ରହି    ପ୍ରାଣୀର ଆତ୍ମଜ୍ଞାନ ନାହିଁ ।
ଆୟୁଷ କ୍ଷୟ ନଜାଣନ୍ତି    ବିଷୟ ସଦା ମନେ ଚିନ୍ତି ।
ରାତ୍ରୀ ହରଇ ଅର୍ଦ୍ଧବେଳେ    ନିଦ୍ରା ବା ବଧୂ ସଙ୍ଗ ମେଳ ।
ଦିବସେ ଅର୍ଥ ଚିନ୍ତା କୂଳ    କୁଟୁମ୍ବ ପୋଷଣେ ବିକଳ ।
ମରଣ ଦେଖୁଥାଇ ଡୋଳେ    ଅଜ୍ଞାନେ ଭ୍ରମେ ସୁଖ ଭୋଳେ ।

* ବିଶେଷ କଥନ *

ଗୃହୀମାନେ ଜାଣି ପାରନ୍ତି ନାହିଁ ଯେ ଭଗବାନ ତାଙ୍କ ହୃଦୟରେ ଅଛନ୍ତି କାରଣ ସେମାନେ କାମ, କ୍ରୋଧ, ଲୋଭରେ ମାୟାଗ୍ରସ୍ତ ଥାଆନ୍ତି । ତେଣୁ ପ୍ରତି ମୁହୂର୍ତ୍ତରେ ଆୟୁକ୍ଷୟ ହେଉଛି ବୋଲି ଜାଣି-

ପାରନ୍ତି ନାହିଁ । ବାକି ଅଧା ଆୟୁଷ ଅର୍ଥ ଚିନ୍ତା, କୁଟୁମ୍ବ ପୋଷଣରେ କଟିଯାଏ । ଏପରିକି ମୃତ୍ୟୁକୁ ନିଜ ଆଖିରେ ଦେଖୁଥିଲେ ମଧ୍ୟ ଅଜ୍ଞାନତା ଯୋଗୁଁ କ୍ଷଣିକ ସୁଖରେ ମାତେ । ଆଧ୍ୟାତ୍ମିକ ଚେତନା ନହେବାରୁ ଜୀବନ ବୃଥାରେ କଟିଯାଏ ।

—o—

ଏ ଭାଗବତ ବାଣୀ କର୍ଣ୍ଣେ ଯେ ପଢେ ଶୁଣେ ଭକ୍ତିଜ୍ଞାନ ।
ମୁକୁନ୍ଦ ପାଦେ ତାଙ୍କ ମତି ନିଶ୍ଚଳେ ରହେ ନିତି ନିତି ।

## ମୁକ୍ତି ପାଇବାର ସହଜ ଉପାୟ

ଗୃହୀ, ଅଜ୍ଞାନୀ କିମ୍ବା ଜ୍ଞାନୀ ହରି କୀର୍ତ୍ତନ କଲେ ପ୍ରାଣୀ ।
ଅଭିଷ୍ଟ ଫଳ ନିଶ୍ଚେ ପାଏ ନିର୍ଭୟ ପଥେ ଚିତ୍ତ ରହେ ।
ମନୁଷ୍ୟ ମଧ୍ୟେ ସାଧୁ ପ୍ରାଣୀ ମରଣ କାଳେ ତାହା ଜାଣି ।
ମୁହିଁ ମୋହର ଏ ଶରୀର ଦାର ସମ୍ପଦ ସବୁ ମୋର ।
ଅଜ୍ଞାନୀ ଜନଙ୍କ ଏ ଭାବ ସର୍ବ ସମ୍ପଦ ପଦ୍ମନାଭ ।
ସତ ଅସତ ରୂପ ଯେତେ ମାୟା କଳ୍ପିତ ଏ ଜଗତେ ।
ଏ ସର୍ବ ରୂପ ନାରାୟଣ ଅନାଦି ପରମ କାରଣ ।
ଆନନ୍ଦେ ବୋଲ ହରି ହରି ହରି କରିବେ ଭବୁ ପାରି ।

## ବିଶେଷ କଥନ

ଯେଉଁମାନେ ଭକ୍ତିର ସହିତ ଭଗବତ ପଢ଼ନ୍ତି ବା ଶୁଣନ୍ତି ଗୃହ-କର୍ମରେ ସର୍ବଦା ଲାଗିଥିଲେ ମଧ୍ୟ ହୃଦୟରେ ସେମାନେ ଭଗବତ ସତ୍ତା ଅନୁଭବ କରନ୍ତି ଗୃହୀ ଜ୍ଞାନୀ ବା ଅଜ୍ଞାନୀ ଯେ କେହି ହରିଭଜନ ବା ସଂକୀର୍ତ୍ତନ କଲେ ସମସ୍ତ ପାପରୁ ମୁକ୍ତ ହୋଇ ଭଗବାନଙ୍କ ପାଦରେ ଲୀନ ହୁଏ । ଅଜ୍ଞାନୀ ଭାବେ ଧନ, ସମ୍ପଦ, କୋଠା ବାଡ଼ି, ସ୍ତ୍ରୀ, ପୁତ୍ର ସବୁ ମୋର, ସବୁ ମୁଁ କରିଛି କିନ୍ତୁ ସେ ଜାଣିପାରେ ନାହିଁ । ମନୁଷ୍ୟର କିଛି କରିବାର ଶକ୍ତି ନାହିଁ । ଅଦୃଶ୍ୟ ଶକ୍ତି ସବୁ କିଛି କରେ । ଅଦୃଶ୍ୟ-ଶକ୍ତି ସବୁକାମ ସବୁକିଛି ମନୁଷ୍ୟ ଦ୍ୱାରା କରଉଛି । କିଏ ସାଧୁ ବା ଅସାଧୁ ତାହା ତାହାର ମୃତ୍ୟୁବେଳେ ବା ପରେ ଲୋକ ମୁଖରୁ ଜଣାପଡ଼େ । ଓଁ ନମୋ ଭଗବତେ ବାସୁଦେବାୟ ।

ଇତି ଦ୍ୱିତୀୟ ସ୍କନ୍ଧ ସମାପ୍ତ ।

—୦—

# ତୃତୀୟ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ ନର ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍

ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

* ସୃଷ୍ଟି ରହସ୍ୟ *

ଏ ସୃଷ୍ଟି ଜାତ ରଜ ଶୁଣେ — ହରିର ଲୀଳା ଏ ପ୍ରମାଣେ ।
ବ୍ରାହ୍ମଣ ଜନ୍ମିଲା ମୁଖରୁ — ଯେ ଚାରି ବର୍ଣ୍ଣଙ୍କର ଗୁରୁ ।
ବିରାଟ ତେଜ ଶୁଣେ ହରି — ଭୁଜୁ କ୍ଷତ୍ରୀୟ ଜନ୍ମ କରି ।
ବୈଶ୍ୟ ଜନ୍ମିଲା ଉର ଯୁଗେ — ଜୀବର ଜୀବିକା ଯୋଗାଇବେ ।
ଶୂଦ୍ର ଜନ୍ମିଲା ପାଦ ତଟେ — ଏ ତିନିବର୍ଣ୍ଣ ସେବା ଅର୍ଥେ ।

—0—

ବ୍ରାହ୍ମଣ ପବିତ୍ର ଜୀବନ ଯାପନ କରି ଦେବ ସେବା ଯଜ୍ଞଦାନ ଇତ୍ୟାଦି ସତ୍‌କର୍ମକରେ । କ୍ଷତ୍ରୀୟ ଧର୍ମଯୁଦ୍ଧକରି ପ୍ରଜାମାନଙ୍କୁ ସୁଶାସନ-ରେ ପାଳେ । ବୈଶ୍ୟ ବାଣିଜ୍ୟ, କୃଷି ଓ ଗୋପାଳନ କରି ନିଜ, ନିଜ ଧର୍ମ କର୍ତ୍ତବ୍ୟ କରି ମୃତ୍ୟୁପରେ ସମସ୍ତେ ଏକ ଭଗବାନଙ୍କ ପାଦ ପଦ୍ମରେ ଲୀନ ହୁଅନ୍ତି । ପରଧର୍ମ ଗ୍ରହଣ କଲେ ନର୍କରେ ପଡ଼ନ୍ତି । ଶୂଦ୍ର ସମସ୍ତଙ୍କର ସେବା କରେ ।

ଭଗବାନଙ୍କ ମାୟା

ସେ ନିଜ ଗୁଣେ ମାୟାବଳେ — ବିଶ୍ୱ ସୃଜଇ ଅବହେଳେ ।
ସୃଷ୍ଟି ପାଳଇ କରେ ଅନ୍ତ — କ୍ରୀଡ଼ାପାର ପୁରୁଷ ଯେମନ୍ତ

ଯେ ଯେଉଁ ରୂପେ ତାକୁ ଭବେ ସେ ସେହି ରୂପେ ତାକୁ ଲଭେ ।
ଏ ଆତ୍ମା ଜଗତ ଜୀବର ସନ୍ଦେହୀ ଜନେ ଅଗୋଚର ।
ଦେଖି ଉଦ୍ଧବ ତା ମହିମା କହି ନପାରି ଗୁଣସୀମା ।
ଯେ କୃଷ୍ଣ ପରମ ମଙ୍ଗଳ ଆନନ୍ଦ ମାନଙ୍କର ମୂଳ ।
ଯେ ହରି ସ୍ୱୟଂ ଏ ସଂସାରେ ମନୁଷ୍ୟ ଶରୀର ବିହରେ ।
ସେ ଶକ୍ତି ରୂପୀ ଶାନ୍ତ ମୂର୍ତ୍ତି ସରବ ଦେହେ ତାର ବ୍ୟାପ୍ତି ।
ବସୁଦେବ ଯେ କଂସ ଡରେ ନେଇ ଥୋଇଲା ନନ୍ଦଘରେ ।
ଷୋଳ ସହସ୍ର ଗୋପ ନାରୀ ରମିଲା ନିଜ ରୂପ ଧରି ।
ତାର ମହିମା କେ କହିବ ଯାଙ୍କୁ ନଜାଣେ ବ୍ରହ୍ମା ଶିବ ।
ଭକ୍ତି ବୈରାଗ୍ୟ ଯାର ନାହିଁ କୃଷ୍ଣଙ୍କୁ ପାଇବ ସେ କାହିଁ ।
ତା ପାଦ ପଦ୍ମ ଛାୟାତଳେ ଯେ ପ୍ରାଣୀ ରହନ୍ତି ନିଷ୍ଠଳେ ।
ସେ ଏ ସଂସାରୁ ତରିଯାନ୍ତି କେବେ ହେଁ ଭ୍ରମେ ନପଡ଼ନ୍ତି ।
କୃଷ୍ଣ ବିମୁଖ ଯେତେ ନର କର୍ମ ଅଭାଗ୍ୟ ତାହାଙ୍କର ।
ଚକ୍ର ପ୍ରହାରେ ନକ୍ର ମାରି ହସ୍ତୀର ଶୁଣ୍ଢ ହସ୍ତେ ଧରି ।
ଜଳୁ ଉଦ୍ଧରି ନାରାୟଣ ଅନ୍ତର ହେଲେ ତତକ୍ଷଣ ।
ସତ ଅସତ ରୂପ ସେହି ଅଶେଷ ମାୟା ରୂପ ବହି ।
କରଇ ଆତ୍ମା ଖେଳା ଲୀଳା ତାର ଚରିତ ଭବଭେଳା ।

—o—

## ବିଶେଷ କଥନ

ଭଗବାନ ସମସ୍ତ ପ୍ରାଣୀଙ୍କୁ ସୃଷ୍ଟି କରୁଛନ୍ତି, ପାଳୁଛନ୍ତି ଏବଂ ବିନାଶ କରୁଛନ୍ତି । ଭଗବାନଙ୍କୁ ଯେ ଯେପରି ଭକ୍ତି କରେ ଭଗବାନଙ୍କର କରୁଣା ସେ ସେପରି ଭାବେ ତାଙ୍କର କରୁଣା ଲାଭ କରେ । ଭଗବାନ ମନୁଷ୍ୟ ରୂପରେ ସଂସାରର ଖେଳାଲୀଳା କରୁଛନ୍ତି । କିନ୍ତୁ ମନୁଷ୍ୟ ମାୟାବଦ୍ଧ ଥିବାରୁ ସେ ତାହା ଜାଣିପାରେ ନାହିଁ । ସହସ୍ର ସହସ୍ର ଗୋପୀ ତାଙ୍କୁ ନିଜର ସ୍ୱାମୀରୂପେ ପାଇଥିଲେ । ତେଣୁ ତାଙ୍କର ମହିମା ଦେବତାମାନେ ବି ଜାଣି ପାରିବେ ନାହିଁ । ଯେ ସର୍ବଦା କୃଷ୍ଣ ଚିନ୍ତା କରନ୍ତି ସେମାନଙ୍କୁ ମୁକ୍ତି ମିଳେ ।

## ଗୃହାଶ୍ରମ

ପୁତ୍ର କଳତ୍ର ଘେନି ଘର ସର୍ବ ଆଶ୍ରୟ ମଧ୍ୟେ ସାର ।

ସଂସାର ସ୍ୱଧର୍ମଟି ଏହି ହେ ଧର୍ମେ କର୍ମେ ରହେ ଗୃହୀ ।

## * ବିଶେଷ କଥନ *

ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ, ଯତିଧର୍ମ । ଏହି ଚାରୋଟି ଅବସ୍ଥା ବା ଆଶ୍ରମ ମଧ୍ୟରେ ଗୃହାଶ୍ରମ ଶ୍ରେଷ୍ଠ । ଏ ଚାରିଟି ଆଶ୍ରମ ଜୀବନ କଷ୍ଟଦାୟକ ହେଲେ ମଧ୍ୟ ଶେଷ ଆଶ୍ରମ ଅର୍ଥ ଯତିଧର୍ମ ଅତ୍ୟନ୍ତ କଷ୍ଟ-ଦାୟକ ହୋଇଥାଏ କାରଣ ୮୦ ବର୍ଷ ପରେ ନାନା ରୋଗ, ଦୁଃଖମୟ

ଜୀବନ ଯାପନ କରିବାକୁ ପଡେ । ତେଣୁ ଗୃହ ଘରେ ରହି ଯତିଧର୍ମ ପାଳନ କରିପାରିବ । ଏହି ସମୟରେ ପରିବାରର ସମସ୍ତ ଘୃଣା ବା କଟୁ ବଚନ ସହ୍ୟକରି ଯତ୍‌କିଞ୍ଚିତ ଆହାରରେ ସନ୍ତୁଷ୍ଟହୋଇ କେବଳ ଭଗବାନଙ୍କର ଭଜନ କରି ଶେଷ ଜୀବନ କଟାଇବା ଉଚିତ୍ ।

—୦—

## କପିଳଙ୍କର ମାତାଙ୍କୁ ଉପଦେଶ

ଈଶ୍ୱର ଅର୍ଥେ କର୍ମ କରି — ଧର୍ମ ମାର୍ଗକୁ ଅନୁସରି ।
ସର୍ବତ୍ର ଦେଖେ ଯେ ସମାନ — ସାତ୍ତ୍ୱିକ ଭକ୍ତି ତାକୁ ଜାଣ ।
ଭକ୍ତି ଯୋଗରେ ମୋତେ ଧ୍ୟାୟୀ — ସେ ମୋତେ ହୃଦୟେ ଦେଖଇ ।
ଏ ଯେତେ ଜୀବଲୋକ ଛନ୍ତି — ମୋ ମାୟା କେହି ନଜାଣନ୍ତି ।
ମୁଁ କାଳ ସକଳ ନାଶଇ — ମୋ ବିନୁ ଅନ୍ୟଗତି ନାହିଁ ।
ଯେ ନାରୀ ସଙ୍ଗେ ବିହରଇ — ନିଶି ଦିବସ ମନ ଦେଇ ।
ଦେହ କଳତ୍ର ସୁତ ଘର — ଧନ ସମ୍ପଦ ସବୁ ମୋର ।
ମନକୁ ଏଣେ ଦୃଢ କରେ — ସୁଖ ମଣଇ ଦୁଃଖ ଘୋରେ ।
ମଣଇ କୃତାର୍ଥ ହୋଇଲି — ଅନେକ ସୁଖ ମୁଁ ପାଇଲି ।
ମୋ ତୁଲ୍ୟ ନାହିଁ ଭାଗ୍ୟବନ୍ତ — କେ ଅଛି ମୋପରି ମହତ ।
ତହୁଁ ଯେତେକ ଦୁଃଖ ସହେ — ନବୁଝେ ପଡ଼ି ମାୟା ମୋହେ ।
ତଭା ମାତ ଦେଖ ସୁବିସ୍ତରେ — ସ୍ୱର୍ଗ ନରକ ଏହିଠାରେ ।

—୦—

* ବିଶେଷ କଥନ *

ଭକ୍ତ ଦୃଢ ବିଶ୍ୱାସ କରି ଭଗବାନଙ୍କୁ ହୃଦ ମଧ୍ୟରେ ଦେଖିପାରେ ଯେଉଁ ଗୃହୀ ଅଭକ୍ତ ଅସତ ଜୀବନ ଯାପନ କରେ ଏବଂ ସ୍ତ୍ରୀ, ପୁତ୍ର, ଧନ ସମ୍ପଦ ସବୁ ନିଜର ବୋଲି ଭବେ ଓ ନିଜେ ଖୁବ୍ ସୁଖରେ ଅଛିବୋଲି ଭାବେ ସେଥିରେ ସେ ଯେଉଁ ଦୁଃଖଭୋଗ କରେ ମାୟାରେ ପଡ଼ି ସେ ତାହା ବୁଝିପାରେନାହିଁ । କପିଳ ଋଷି ଭଗବାନ ମାତାଙ୍କୁ ଏକଥା ବୁଝାଇ ସାରିଲା ପରେ କହିଲେ ମା ସ୍ୱର୍ଗ ନର୍କ ଏହି ପୃଥିବୀରେ ଅଛି । ଯେ ଯେଉଁପରି କର୍ମ କରେ ସେ ସେପରି ଫଳ ଭୋଗକରେ । ଇତି ।

ତୃତୀୟ ସ୍କନ୍ଧ ସମାପ୍ତ

ଓଁ ନମୋ ଭଗବତେ ବାସୁଦେବାୟ ।



# ଚତୁର୍ଥ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ
ଦେବୀ ସରସ୍ୱତୀ ବ୍ୟାସଂ ତତୋଜୟ ମୁଦୀରୟତେ୍
ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

## ବନ୍ଧୁ ଅଭ୍ୟାଗତ ପ୍ରତି କର୍ତ୍ତବ୍ୟ

ଯେ ପ୍ରାଣୀ ଅଭ୍ୟାଗତ ଦେଖି     ବକ୍ର ବଦନେ ବୁଜେ ଆଖି ।
ବନ୍ଧୁ ହେଲେ ହେ ଜାଣ ତୁହି     ତା ଗୃହେ ଯିବା ନ ଯୋଗାଇ
ବନ୍ଧୁର ଆଗମନ ଦେଖି     ଉଠିବ ଆସନ ଉପେକ୍ଷି ।
ସମ୍ମୁଖେ କରି ନମସ୍କାର     କରିବ ବନ୍ଧୁର ବେଭାର ।
ମଧୁର ବିନୟ ବଚନ     କହି ତୋଷିବ ବନ୍ଧୁମନ ।

## ବିଶେଷ କଥନ

ନିଜର ଆତ୍ମୀୟ ଅତିଥି ବା ବନ୍ଧୁ ତୁମଘରକୁ ଆସୁଥିବାର ଦେଖି ଯେଉଁ ଗୃହସ୍ଥ ମୁହଁ ମୋଡ଼ି ଦେଇ ଆଖିବୁଜେ ସେ ଭଳି ବନ୍ଧୁ ଘରକୁ ଯିବା ଉଚିତ ନୁହେଁ । ବନ୍ଧୁ ଆସୁଥିବାର ଦେଖି ଶୀଘ୍ର ଆସନରୁ ଉଠି-ପଡ଼ି ଆନନ୍ଦ ମନରେ ନମସ୍କାର କରି ଆସନରେ ବସାଇ ବିନୟ ଓ ମଧୁର ବଚନ କହି ବନ୍ଧୁର ଉପଯୁକ୍ତ ବେଭାର କରିବା ଉଚିତ୍ । ଏହାହିଁ ବନ୍ଧୁର ବନ୍ଧୁପ୍ରତି ଉପଯୁକ୍ତ କର୍ତ୍ତବ୍ୟ ।

## ସତୀ ସ୍ତ୍ରୀର କର୍ତ୍ତବ୍ୟ ଓ ସତୀ ମରଣ

ପାଷାଣ୍ଡେ ସ୍ୱାମୀର ନିନ୍ଦନେ     ଶୁଣିଲେ ହସ୍ତ ଦେବ କାନେ ।
ନ ଶୁଣି ସେଠୁ ପଳାୟନ     ଏହାହିଁ ପ୍ରତିବ୍ରତା ଧର୍ମ ।
ପାରିଲେ ତା ଜିହ୍ୱା ଛେଦିବ     ନୋହିଲେ ଜୀବନ ତେଜିବ ।

ସଚରାଚର ଗୁରୁ ହର ଯେ ଆତ୍ମା ଗମ ଯୋଗେଶ୍ୱର ।
ଶାନ୍ତ ବିଗ୍ରହ ନିର୍ବିକାର ଅଦ୍ଭୁତ ମହିମା ତାହାର ।
ସେ ଯେ ଅଶେଷ ଦେବ ଗୁରୁ ତାହାଙ୍କୁ ତୁହି ନିନ୍ଦା କରୁ ।
ସ୍ୱାମୀ ନିନ୍ଦନ ଦୁଃଖ ସହି ଏ ଦେହ ନରଖିବି ମୁହିଁ ।
ସ୍ୱାମୀର ଅପମାନ ଅର୍ଥେ ପିତାର ଅନାଦର ମତେ ।
ସ୍ୱାମୀଙ୍କୁ ହୃଦେ ଧ୍ୟାନ କରି ଯଜ୍ଞକୁ ପ୍ରଦକ୍ଷିଣ କରି ।
ତତ୍କ୍ଷଣେ କୁଣ୍ଡେ ଲମ୍ଫଦେଲା ସତୀ ସ୍ୱଦେହେ ସ୍ୱର୍ଗେ ଗଲା ।

## ବିଶେଷ କଥନ

କୌଣସି ସତୀ ସ୍ତ୍ରୀ ସ୍ୱାମୀର ନିନ୍ଦା ସହିପାରେ ନାହିଁ । କେହି ଦୁଷ୍ଟ ଲୋକ ସ୍ୱାମୀଙ୍କୁ ନିନ୍ଦା କରୁଥିବାର ଶୁଣିଲେ କାନରେ ହାତ ଦେଇ ସେଠାରୁ ପଳେଇବା ଉଚିତ କିମ୍ବା ଯଦି ଶକ୍ତି ଥାଏ ତେବେ ନିନ୍ଦୁକର ଜିଭ କାଟିଦେବା ଉଚିତ । ନକାଟି ପାରିଲେ ନିଜେ ପ୍ରାଣ-ତ୍ୟାଗ କରିବା ଉଚିତ । ରଜା ଦକ୍ଷ ଯଜ୍ଞ କଲାବେଳେ ଶିବଙ୍କୁ ନିନ୍ଦିତ କରିବା ପାଇଁ ବରଣ ନକରି ସତୀଙ୍କୁ ମଧ୍ୟ ଅନାଦର କରିଥିବାରୁ ସତୀ ଏହା ସହି ନପାରି ସ୍ୱାମୀଙ୍କୁ ହୃଦୟରେ ଧ୍ୟାନ କରି ଯଜ୍ଞକୁ ପ୍ରଦକ୍ଷିଣ କରି ଜ୍ୱଳନ୍ତ ଅଗ୍ନି କୁଣ୍ଡରେ ଝାସ ଦେଲେ ଏବଂ ସୁନା ରଥରେ ସ୍ୱର୍ଗ ଗମନ କଲେ ।

—0—

## ଦକ୍ଷଙ୍କର ଅନୁତାପ

ସତୀ ମରଣ ଦେଖି ଡ଼ୋଳେ — ଦକ୍ଷ ଯେ ଅନୁତାପ କଲେ ।
ମୁଁ ଯେ ହୋଇଲି ଜ୍ଞାନ ହତ — ମୋତେ ନିନ୍ଦିବା ତୋ ଉଚିତ ।
ଶିବେ ନିନ୍ଦିଲି ଗର୍ବ ବହି — ମୋର କୁଶଳ ଆଉ ନାହିଁ ।
ଈଶ୍ୱର ଲୀଳା ଏ ସଂସାର — କର୍ମ ଅଟଇ ମୂଳତାର ।
ଅଦୃଶ୍ୟ ସୁଖ ଦୁଃଖ ଦିଏ — ଅନ୍ୟକୁ ଦୋଷିବାର ନୁହେଁ ।
କର୍ମ ଆଦରି ସହି ଦୁଃଖ — କେବେହେଁ ନୋହିବ ବିମୁଖ ।

* ବିଶେଷ କଥନ *

ଦକ୍ଷ ରଜାଙ୍କୁ ସବୁ ରଜା, ମହାରଜା ସମ୍ମାନ କରନ୍ତି । ଥରେ ସ୍ୱର୍ଗରେ ଇନ୍ଦ୍ରଙ୍କ ସଭରେ ଦକ୍ଷ ମହାରଜା ଉପସ୍ଥିତ ହେବାରୁ ସମସ୍ତେ ଉଠିପଡ଼ି ଦକ୍ଷଙ୍କୁ ପ୍ରଣାମ କରି ସମ୍ମାନୀତ କଲେ । କିନ୍ତୁ ଶିବ ଆସନରୁ ଉଠିଲେନାହିଁକି ଦକ୍ଷଙ୍କୁ ପ୍ରଣାମ କଲେନାହିଁ । ଶିବଙ୍କର ଶ୍ୱଶୁରଙ୍କୁ ଏପ୍ରା ବ୍ୟବହାର ଦେଖି ଦକ୍ଷକ୍ରୋଧରେ ଗର୍ବର ସହିତ ଅଭିଶାପ ଦେଇଥିଲେ ଏବଂ ବହୁନିନ୍ଦା କରିଥିଲେ । ସତୀ ପତିଙ୍କ ନିନ୍ଦା ସହିନପାରି ଯଜ୍ଞ କୁଣ୍ଡକୁ ଡ଼େଇଁ ପ୍ରାଣତ୍ୟାଗ କରିଥିଲେ । ତେଣୁ ଦକ୍ଷ ଏହା ଦେଖି ଅନୁତାପକଲେ ଏବଂ କହିଲେ ଏ ସବୁ ଇଶ୍ୱରଙ୍କର ଲୀଳା ଅଦୃଶ୍ୟ ଶକ୍ତି ସବୁକିଛି କରେ । ସୁଖ ବା ଦୁଃଖ ନିଜ କର୍ମ ଅନୁସାରେ ମିଳେ ।

ମୁଁ ଯେ ଗର୍ବରେ ଶିବ ନିନ୍ଦା କଲି, ତାର ଫଳ ପାଇଲି । ନିଜର କର୍ମ ଅନୁସାରେ ସୁଖକୁ ବା ଦୁଃଖକୁ ସହିଯିବା ଉଚିତ୍ । ସୁଖରେ ମାତି ଆନନ୍ଦିତ ହେବାଉଚିତ୍ ନୁହେଁ କିମ୍ବା ଦୁଃଖରେ ଭାଙ୍ଗି ପଡ଼ିବା ଉଚିତନୁହେଁ ।

—0—

## ଭକ୍ତର କର୍ତ୍ତବ୍ୟ

ପୂରକ କୁମ୍ଭକ ରେଚକ ପ୍ରାଣାୟାମ କରି ସାଧକ
ହୃଦୟ ନିର୍ମଳ କରିବ ମନ ଚଞ୍ଚଳ ନ କରିବ ।
ବାସୁଦେବଙ୍କୁ ଧ୍ୟାନେ ପୂଜି ହୃଦରେ ବିଷ୍ଣୁନାମ ଭଜି ।
ଯା ନାମ ସ୍ମରି ଅନ୍ତକାଳେ ମୃତ୍ୟୁ ତରନ୍ତି ପ୍ରାଣୀ ହେଲେ ।
ସେ ହରି କାଳ ଶକ୍ତି ରୂପୀ ନିଜ ମାୟାରେ ବିଶ୍ୱବ୍ୟାପୀ ।
ସର୍ବ କରଇ ସର୍ବ ହରେ ଅକର୍ତ୍ତା ରୂପେ ସେ ବିହରେ ।

## * ବିଶେଷ କଥନ *

ଭକ୍ତ କାହିଁକି ଓ କିପରି ପ୍ରାଣାୟାମ କରିବ ? ପ୍ରଥମେ ଶୁଦ୍ଧାସନରେ ବସି ଭକ୍ତ ମେରୁଦଣ୍ଡ ବେକ ଓ ମୁଣ୍ଡ ସିଧାରଖି ଡାହାଣ ହାତର ବୁଢା ଆଙ୍ଗୁଳି ଦ୍ୱାରା ଡ଼ାହାଣ ପୁଡ଼ାକୁ ଚପିଧରି ବାମପୁଡାରେ ଶ୍ୱାସ ବାୟୁକୁ ଭିତରକୁ ୨ ସେକେଣ୍ଡ ପର୍ଯ୍ୟନ୍ତ ଟାଣିନେବ । ଏହାକୁ

ପୂରକ କୁହାଯାଏ । ତାପରେ ଅନାମିକା ଅର୍ଥାତ୍ କାଣି ଆଙ୍ଗୁଠି ପାଖ ଆଙ୍ଗୁଳି ଦ୍ୱାରା ବାମ ପୁଡ଼ାକୁ ଚିପିଧରି ୮ ସେକେଣ୍ଡ ପର୍ଯ୍ୟନ୍ତ ନେଇଥିବା ପ୍ରଶ୍ୱାସକୁ ବନ୍ଦ କରିବ । ଏହାକୁ କୁମ୍ଭକ କହନ୍ତି । ତାପରେ ବୁଢା ଅଙ୍ଗୁଳି ଆସ୍ତେ ଖୋଲିବ ଏବଂ ୪ ସେକେଣ୍ଡରେ ଏକାଠି ହୋଇ ଥିବା ପ୍ରାଣବାୟୁ ଓ ଅପାନ ବାୟୁକୁ ଆସ୍ତେ ଆସ୍ତେ ନିଶ୍ୱାସ ବାୟୁକୁ ତ୍ୟାଗ କରିବ ଏହାକୁ ରେଚକ କୁହାଯାଏ । ଏହିପରି ୫ରୁ ୧୦ଥର କରିବ । ଏପରିକଲେ ହୃଦୟ ଓ ମନ ଶୁଦ୍ଧ ଓ ପବିତ୍ର ହୁଏ ଏବଂ ଧ୍ୟାନବେଳେ ସେ ହୃଦୟରେ ଭଗବାନଙ୍କୁ ଦେଖିପାରେ । ମୃତ୍ୟୁ ସମୟରେ ଯେଉଁ ବ୍ୟକ୍ତି ଭଗବାନଙ୍କୁ ସ୍ମରଣ କରୁ କରୁ ମରିଯାଏ । ସେ ନିଶ୍ଚିତ ରୂପେ ଭଗବାନଙ୍କୁ ପାଏ ଓ ମୁକ୍ତି ହୁଏ ।



## ସମୟର ପ୍ରଭାବ

କେହି କାହାର ହନ୍ତାନୁହେଁ  ପ୍ରାଣୀ ଜୀବନ କାଳ ବହେ ।
ହରି ଚରଣ ନିତ୍ୟେ ଚିନ୍ତି  ମାୟା ବନ୍ଧକୁ ତରିଯାନ୍ତି ।
ସାଧୁଙ୍କ ସେବାହିଁ ଏ ଭବ  ସମେ ଦେଖନ୍ତି ସର୍ବ ଜୀବ ।
ଏକଇ ଆତ୍ମା ସର୍ବ ଦେହେ  ଶୁଦ୍ଧ ଅଶୁଦ୍ଧ ଭେଦନୁହେଁ ।



## * ବିଶେଷ କଥନ *

କେହି କାହାରିକୁ ମାରିପାରେ ନାହିଁ ଏବଂ ନିଜେ ମରେ ନାହିଁ । ଶରୀରମରେ ଆତ୍ମା ମରେନାହିଁ । ଆତ୍ମା ଅମର ପୁରୁଣାଦେହ ତ୍ୟାଗ-କରି ନୂଆଦେହ ଗ୍ରହଣକରେ । ଆତ୍ମା ସଦା ପବିତ୍ର ଏବଂ ସବୁପ୍ରାଣୀଙ୍କ ହୃଦୟରେ ସମାନ ଭବେ ଥାଏ । ତେଣୁ ଛୁଆଁ ଅଛୁଆଁ ବାରିବା ମୂର୍ଖତା କାରଣ ଯେଉଁ ମନୁଷ୍ୟ ମଧ୍ୟରେ ଆତ୍ମା ଅଥଚ ଭଗବାନ ଅଛନ୍ତି ସେ ଅଛୁଆଁ ହେବ କିପରି ?

—୦—

## ଧ୍ରୁବ ଉପଖ୍ୟାନ

ଯେ ରଜା ପ୍ରଜାଙ୍କୁ ନପାଳେ — ଅନ୍ୟାୟେ ଧନ ନିଏ ବଳେ ।
ସେ ରଜା ନରକ ଭୁଞ୍ଜଇ — ତାହାର ଗତି ମୁକ୍ତି ନାହିଁ ।
ଧ୍ରୁବ ଉତ୍ତାନପାଦ ସୁତ — ବିଷ୍ଣୁର ପରମ ଭକତ ।
ତପର ବଳେ ସେ ନିଶ୍ଚଳେ — ବସିଲ ଧ୍ରୁବ ମଣ୍ଡଳେ ।

## * ବିଶେଷ କଥନ *

ପ୍ରଜା ମାନଙ୍କୁ ସୁଖ ଶାନ୍ତିରେ ପାଳିବା ରଜାର କର୍ତ୍ତବ୍ୟ । କିନ୍ତୁ ଯେଉଁ ରଜା ବଳପୂର୍ବକ ପ୍ରଜାଙ୍କର ଧନ ଅନ୍ୟାୟରେ ଲୁଟି ନିଏ ସେ ନର୍କ ଭୋଗକରେ । ବିଷ୍ଣୁଭକ୍ତ ଧ୍ରୁବ ପ୍ରଜାମାନଙ୍କୁ ସୁଖ ଶାନ୍ତିରେପାଳି ଧର୍ମ ବଳରେ ଧ୍ରୁବମଣ୍ଡଳରେ ବାସକଲ ।

ତୋ ଅବତାର ଏ ଜଗତେ    ପ୍ରାଣୀଙ୍କ ନିସ୍ତାର ନିମନ୍ତେ ।
ଅଧର୍ମ ନାଶି ଧର୍ମ ପାଳୁ    ତୁ ନାଥ ପରମ ଦୟାଳୁ ।
ପର ରମଣୀ ମାତୃ ପ୍ରାୟ    ନିଜ ରମଣୀ ନିଜକାୟ ।
ପ୍ରାଣୀଙ୍କୁ ନିଜ ପ୍ରାୟ ଚିନ୍ତେ    ଯେ ଭକ୍ତ ସେବାକରେ ନିତ୍ୟେ ।
ଈଶ୍ୱର ସନ୍ତୋଷ ତାହାଙ୍କୁ    ଯେ ଭଜେ ବ୍ରାହ୍ମଣ କୁଳକୁ ।
ଏଣୁ ବିପ୍ରଙ୍କୁ ଭୁଞ୍ଜାଇଲେ    ସକଳ ଯଜ୍ଞ ଫଳ ମିଳେ ।

## * ବିଶେଷ କଥନ *

ଭଗବାନ ଯୁଗେ ଯୁଗେ ମନୁଷ୍ୟ ରୂପରେ ଅବତାର ରୂପେ ଜନ୍ମ ଗ୍ରହଣ କରନ୍ତି । ତାଙ୍କର ଦୟା ସର୍ବଦା ସମାନ ରୂପେ ସମସ୍ତଙ୍କ-ଠାରେ ଥିଲେ ମଧ ଦୁଷ୍ଟମାନଙ୍କୁ ସଂହାର କରି ସାଧୁମାନଙ୍କୁ ପାଳନ କରନ୍ତି । ପ୍ରତ୍ୟେକ ବ୍ୟକ୍ତି ପରସ୍ତ୍ରୀଙ୍କୁ ନିଜ ମା ପରି ଏବଂ ନିଜ ସ୍ତ୍ରୀକୁ ନିଜର ଅଙ୍ଗବୋଲି ଭବିବା ଉଚିତ୍ । ଯେଉଁ ଭକ୍ତ ବ୍ରାହ୍ମଣ ସେବାକରେ ଭଗବାନ ସର୍ବଦା ତାହା ପାଖେ ପାଖେ ଥାଆନ୍ତି । ବ୍ରାହ୍ମଣଙ୍କୁ ଖୁଆଇ ସନ୍ତୁଷ୍ଟ କଲେ ଭଗବାନ ସନ୍ତୁଷ୍ଟ ହୁଅନ୍ତି ଏବଂ ସମସ୍ତ ଯଜ୍ଞର ଫଳ ତାଙ୍କୁ ମିଳେ ।



## ପୃଥୁ ରଜା ଚରିତ

ଚିତ୍ତ ବିଶୁଦ୍ଧ ଯାର ନାହିଁ ତାର ବୈରାଗ୍ୟ ଜ୍ଞାନ କାହିଁ ।
କୃଷ୍ଣ ଚରିତ ନିତ୍ୟେ ଭାବ ପ୍ରେମ ପୁଲକ ଅଶ୍ରୁ ଦ୍ରବି ।
ନିର୍ମଳ ହୁଏ ଯାର ମତି ଅଜ୍ଞାନ ମୋହ ନାଶ ଯାନ୍ତି ।
ପୂର୍ବ ପୃଥୁର ଧର୍ମ ଥିଲା ସେ ପୁଣ୍ୟେ ବୈକୁଣ୍ଠେ ବସିଲା ।

* ବିଶେଷ କଥନ *

କୃଷ୍ଣ ଚରିତ ସ୍ମରଣ କରୁ କରୁ ଯାହାର ପ୍ରେମ ଟାଙ୍କୁରି ଉଠେ ଓ ଆଖିରୁ ଲୁହ ଗଡ଼ିପଡ଼େ ତାହାର ମନ ନିର୍ମଳ ହୁଏ ଓ ଅଜ୍ଞାନ ଦୂର-ହୁଏ । ପ୍ରତ୍ୟେକ ଗୃହସ୍ଥ ଘର ସଂସାର ସମସ୍ତ କାର୍ଯ୍ୟ କରିବା କର୍ତ୍ତବ୍ୟ । କିନ୍ତୁ ସମସ୍ତ କର୍ମ ଶ୍ରୀକୃଷ୍ଣଠାରେ ଅର୍ପଣ କରିଦେଇ ତାଙ୍କର ଶରଣାପନ୍ନ ହେବା ଉଚିତ୍ । ପୃଥୁରଜା ତାଙ୍କର ପୂର୍ବ ଜନ୍ମର ପୁଣ୍ୟ ବଳରେ ଏ ଜନ୍ମରେ ସେପରି କର୍ମ କରି ଅର୍ଥାତ୍ ଭଗବାନଙ୍କର ସ୍ମରଣ, ଭଜନ କରି ମୃତ୍ୟୁ ପରେ ବୈକୁଣ୍ଠରେ ବସିଥିଲେ ।



## ନାରୀ

ଯେସନେ ଚକ୍ରହୀନା ରଥ ବସିଲେ ସୁଖ ନାହିଁ ଜାତ ।
ତେସନେ ଗୃହିଣୀ ବିହିନେ ଗୃହସ୍ଥ ନଶୋଭେ ସଦନେ ।

ବିପଦ କାଳେ ଯେ ଯୁବତୀ ନିଜ ସ୍ୱାମୀକୁ ନ ସେବନ୍ତି ।
ସେ ନାରୀ ଜ୍ଞାନହୀନା ମତି ଜନାପବାଦେ ସେ ମରନ୍ତି ।
ଅଗ୍ନି ସ୍ତ୍ରୀ ସର୍ପ ଓ ଦୁର୍ଜ୍ଜନ ବିଶ୍ୱାସ ନଯିବ ଏ ମାନ ।
ଯାବତ ଆତ୍ମଜ୍ଞାନ ନାହିଁ ନିବୃତ୍ତି ତା ହୃଦୟେ କାହିଁ ।

* ବିଶେଷ କଥନ *

ଯେଉଁ ଘରେ ସ୍ତ୍ରୀ ନଥାନ୍ତି ସେ ଘର ସୁନ୍ଦର ଦିଶେନାହିଁ । ଯେ ସ୍ୱାମୀର ସୁଖରେ ସୁଖି ନୁହେଁ କିମ୍ବା ସ୍ୱାମୀର ଦୁଃଖରେ ଦୁଃଖି ନୁହେଁ ବିପଦ ସମୟରେ ଯେଉଁ ସ୍ତ୍ରୀ ସ୍ୱାମୀର ସେବା ନକରେ କିମ୍ବା ହେଳା-କରେ ସେ ଅଜ୍ଞାନୀ, ତାକୁ ସମସ୍ତେ ନିନ୍ଦାକରନ୍ତି । ଜନାପବାଦ ଯୋଗୁ ସେ ଆତ୍ମହତ୍ୟା କରେ । ଆତ୍ମଜ୍ଞାନ ନଥିବା ସ୍ତ୍ରୀ, ଅଗ୍ନି, ସର୍ପ ଓ ଦୁଷ୍ଟ ଲୋକଙ୍କୁ କଦାପି ବିଶ୍ୱାସ କରିବ ନାହିଁ । ମହାପୁରୁଷ ମାନେ ବହୁ ଶାସ୍ତ୍ରରେ ଏହା ଲେଖି ଯାଇଛନ୍ତି ।



## କର୍ମ

ଯେ କର୍ମେ ହରି ତୋଷ ହୋଇ ତାହାକୁ କର୍ମ ବୋଲି କହି ।
କର୍ମ ନଥିଲେ ଜନ୍ମ ନାହିଁ ତା ପୂର୍ବ କର୍ମରେ ଭୋଗ କାହିଁ ।
ମନଟି ସୁଖ ଦୁଃଖ ଦାତା ପୁଣି ଏ ପାପ ପୁଣ୍ୟ କର୍ତ୍ତା ।
ଏ ମନ କର୍ମର ଆୟତ୍ତେ ଭ୍ରମଇ ସୁଖେ ଦୁଃଖେ ନିତ୍ୟେ ।
ମନୁଷ୍ୟ ଜନ୍ମ କର୍ମ ସେହି ହରିଙ୍କ ସେବା ଯେ କରଇ ।

* ବିଶେଷ କଥନ *

ଭଗବାନଙ୍କର ପୂଜା ସେବାପାଇଁ ଯେ କୌଣସି କାର୍ଯ୍ୟ କରଯାଏ ତାହାକୁ କର୍ମ କୁହାଯାଏ । ଭଗବାନଙ୍କର ପୂଜାଛଡ଼ା ଜୀବନକାଳ ମଧ୍ୟରେ ଆଉ ଯାହାକିଛି କରଯାଏ ତାହାକୁ ଅକର୍ମ କୁହାଯାଏ । ଶାସ୍ତ୍ର ବିରୁଦ୍ଧ କାର୍ଯ୍ୟକୁ ବିକର୍ମ କୁହାଯାଏ । ଇତି ୪ର୍ଥ ସ୍କନ୍ଧ ସମାପ୍ତ ।

ଓଁ ନମୋ ଭଗବତେ ବାସୁଦେବାୟ ।

# ପଞ୍ଚମ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦିରୟେତ୍
ମୁକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

## ମନୁଷ୍ୟର କର୍ତ୍ତବ୍ୟ

ଇନ୍ଦ୍ରିୟ ଜିଣେ ଯେଉଁ ନର ଆନନ୍ଦେ ଭ୍ରମେ ଏ ସଂସାର
ସ୍ତ୍ରୀ ସଙ୍ଗ ସ୍ତ୍ରୀ ସଙ୍ଗୀଙ୍କ ସଙ୍ଗ ହିଂସା ତମାଦି ନାନା ରଙ୍ଗ

ଏ ସର୍ବ ଦୂରେ ପରିହରି — ମହାନ୍ତ ଜନସେବା କରି ।
ସତ୍ କର୍ମ କରେ ଯେ ସଂସାରେ — ମୁଁ ଥାଏ ସଦା ତାହାଠାରେ ।
ସଭିଙ୍କ ମଧ୍ୟେ ମୁହିଁ ରହି — ସୁଖ ଦୁଃଖକୁ ମୁଁ ଭୁଞ୍ଜଇ ।
ଦଣ୍ଡିବା ଶକ୍ତି ଯାର ଥାଇ — ସେ ଯେବେ କ୍ଷମା ଆଚରଇ ।
ସାଧୁଙ୍କ ମଧ୍ୟେ ଶ୍ରେଷ୍ଠ ସେହି — ତାହାର ସୁଖ ଦୁଃଖ ନାହିଁ ।

## * ବିଶେଷ କଥନ *

ସ୍ତ୍ରୀ ସଙ୍ଗ ସ୍ତ୍ରୀ ସଙ୍ଗୀଙ୍କ ସଙ୍ଗ, ହିଂସା, କ୍ରୋଧ ବା ରଗ ପ୍ରଭୃତି ତ୍ୟାଗକରି ଦେବସେବା ମହାପୁରୁଷ ଓ ସାଧୁ ସେବା ପ୍ରଭୃତି ସତ୍କର୍ମ ଯେଉଁମାନେ କରନ୍ତି ଭଗବାନ ସେମାନଙ୍କଠାରେ ଥାନ୍ତି । ଦୋଷୀକୁ ଦଣ୍ଡ ଦେବାର ଶକ୍ତି ଯାହାର ଥାଏ ସେ ଯଦି ତାକୁ କ୍ଷମା ଦିଏ ସେ ସାଧୁ ମାନଙ୍କ ମଧ୍ୟରେ ଶ୍ରେଷ୍ଠ ।

●

## ମୁକ୍ତିର ଉପାୟ

ବ୍ୟାଧି ପୀଡ଼ିତ ଆର୍ତ୍ତ ଜନ — ତାହାଙ୍କୁ ଔଷଧ ଯେସନ ।
ସାଧୁର ସଙ୍ଗ ପ୍ରଭବରେ — ପ୍ରଭୁର କୃପା ହୁଏ ତାରେ ।
ପ୍ରାଣ ପ୍ରୟାଣ ସମୟରେ — ଚିତ୍ତ ନିବେଶି କୃଷ୍ଣ ଠାରେ ।
ତତ୍କ୍ଷଣେ କୁକର୍ମ ଛେଦଇ — ବୈକୁଣ୍ଠ ପଦକୁ ଲଭଇ ।

*   ବିଶେଷ କଥନ   *

ରୋଗରେ ପଡ଼ି ଆତୁର ହେଉଥିବା ରୋଗୀଙ୍କୁ ଔଷଧ ଯେପରି ଆରୋଗ୍ୟ କରେ ସେହିପରି ସାଧୁଙ୍କ ସହିତ ମିଶିଲେ ଭଗବାନଙ୍କର କୃପା ଲଭହୁଏ । ମୃତ୍ୟୁ ସମୟରେ ସେ କୃଷ୍ଣଙ୍କୁ ଧ୍ୟାନକରେ ସେ ସମସ୍ତ ପାପରୁ ମୁକ୍ତହୋଇ ବୈକୁଣ୍ଠରେ ବସେ ।



## ସ୍ତ୍ରୀ ସ୍ୱଭାବ

ଶୁଣ ହେ ସ୍ତିରୀଙ୍କ ସ୍ୱଭାବ     ଏହାଙ୍କ ଚେଷ୍ଟା କେ ଜାଣିବ
ସୁନ୍ଦର ସ୍ତିରୀଙ୍କ ବଦନ     ଶରତେ ପଦ୍ମ ଯେସନ ।
ବଚନ ସୁଧା ଶ୍ରବଣର     ହୃଦୟ ଯେହ୍ନେ କ୍ଷୁର ଧାର ।
ସ୍ୱକାର୍ଯ୍ୟ ଅର୍ଥେ ସେ ମାରନ୍ତି     ପୁତ୍ର ଭ୍ରାତାର ନିଜ ପତି ।
ନାରୀର ପ୍ରିୟ କେହି ନାହିଁ     ସ୍ୱାର୍ଥାନ୍ଧ ବୁଦ୍ଧି ଯାର ଦେହୀ ।
ପୁରୁଷ ଅର୍ଦ୍ଧ ଅଙ୍ଗ ନାରୀ     ନର ସ୍ୱଭାବେ ବଶ ସ୍ତିରୀ ।
ସ୍ୱାମୀ ଦେବତା ନାରୀଙ୍କର     ବେଦେ କହନ୍ତି ଧର୍ମସାର ।

*   ବିଶେଷ କଥନ   *

ମହାପୁରୁଷଙ୍କର ଏ ବେଦବାଣୀ ସାଧାରଣ ସ୍ତ୍ରୀମାନଙ୍କ ପ୍ରତି ଉଦ୍ଦିଷ୍ଟ । ଏହା ସତୀ ବା ଜ୍ଞାନୀ ବା ବିବେକୀ । ସ୍ତ୍ରୀ ମାନଙ୍କପ୍ରତି ଉଦ୍ଦିଷ୍ଟ

ନୁହେଁ । ସ୍ତ୍ରୀ ମାନଙ୍କର ମୁଖ ମଣ୍ଡଳ ପଦ୍ମଫୁଲପରି ସୁନ୍ଦର ଦିଶେ ଏବଂ ସେମାନଙ୍କର କଥା କାନକୁ ଅମୃତପରି ଲାଗେ କିନ୍ତୁ ହୃଦୟ କ୍ଷୁରଧାର ପରି ଅର୍ଥାତ୍ କେତେବେଳେ ଯେ କ୍ଷୁରରେ କାଟିଦେବ ଜାଣି ହେବ-ନାହିଁ । ସେମାନେ ନିଜର କାର୍ଯ୍ୟ ସାଧନପାଇଁ ସମସ୍ତ ପାପ, ଅନ୍ୟାୟ କାମ କରିପାରନ୍ତି । ଏତେ ଖରାପ ଗୁଣଥିଲେ ମଧ୍ୟ ପୁରୁଷ ସ୍ତ୍ରୀ ବଶ-ହୋଇଯାଏ କାରଣ ସ୍ତ୍ରୀ ପୁରୁଷର ଅର୍ଦ୍ଧଅଙ୍ଗ ଏବଂ ସ୍ତ୍ରୀର ଦେବତା ସ୍ୱାମୀ ତେଣୁ ସେମାନେ ଅଭିନ୍ନ ଅର୍ଥାତ୍ ଏକ ଆତ୍ମା । ଇତି ।

ପଞ୍ଚମ ସ୍କନ୍ଧ ସମାପ୍ତ ଓଁ ନମୋ ଭଗବତେ ବାସୁଦେବାୟଃ ।



# ଷଷ୍ଠ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦିରୟେତ୍
ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

## ଗୃହୀ ମାନଙ୍କୁ ଉପଦେଶ

ସାତ୍ତ୍ୱିକ ଭୋଜନ ଯେ କରେ		ସକଳ ବ୍ୟାଧି ତାକୁ ଡରେ ।
ଧର୍ମଜ୍ଞ ଶୀଳବନ୍ତ ଗୁଣ		ସାଧୁର ମହତ ଲକ୍ଷଣ ।
ମହତେ ଯାହା ଆଚରନ୍ତି		ଅପରେ ତାହାହିଁ କରନ୍ତି ।
ଜୀବର ହୃଦୟରେ ହରି		ଅଛନ୍ତି ଆତ୍ମା ରୂପ ଧରି ।
ଯେ ସର୍ବ ସମାନ ଦେଖଇ		ତାହାକୁ ଜ୍ଞାନୀବୋଲି କହି ।
ହେ ପ୍ରଭୁ କମଳ ଲୋଚନ		ତୋ ପାଦେ ରହୁ ମୋର ମନ ।
ପୂର୍ବ ଜନ୍ମର କର୍ମେ ଛଡ଼ି		ସଂସାର ଚକ୍ରେ ଅଛି ପଡି ।
ଏମନ୍ତ ପାପୀ ମୁହିଁ ଯହୁଁ		ଉତ୍ତମ ସାଧୁ ସଙ୍ଗ ହେଉ ।

### * ବିଶେଷ କଥନ *

ନିରମିଷ ଆହାର ଅର୍ଥାତ୍ ଦୁଧ, ଦହି, ଘିଅ, ଅନ୍ନ, ପନିପରିବା, ଶାଗ, ଫଳ ଇତ୍ୟାଦି ପୁଷ୍ଟିକର ଓ ରୁଚିକର ଖାଦ୍ୟ ଯେଉଁମାନେ ଖାଆନ୍ତି ସେମାନେ ଦୀର୍ଘାୟୁ ଅର୍ଥାତ୍ ପ୍ରାୟ ୧୦୦ ବର୍ଷରୁ ଅଧିକ ବଞ୍ଚି-ରହନ୍ତି । ଯେଉଁମାନେ ମାଛ ମାଂସ ମଦ କଟୁ ଦ୍ରବ୍ୟ ପ୍ରଭୃତି ଖାଆନ୍ତି । ସେମାନେ ଦୀର୍ଘାୟୁ ହୋଇ ପାରନ୍ତି ନାହିଁ ଏବଂ ନାନା ପ୍ରକାରର ରୋଗ ଭୋଗକରନ୍ତି । ତେଣୁ ପ୍ରତ୍ୟେକ ଗୃହୀ ମହାପୁରୁଷ ମାନଙ୍କର ଆଚରଣ ଅନୁକରଣ କରି ସାତ୍ତ୍ୱିକ ଜୀବନ ଯାପନ କରିବା ଉଚିତ୍ ।

ଭଗବାନ ସମସ୍ତଙ୍କ ହୃଦୟରେ ସମାନ ରୂପରେ ଅଛନ୍ତି କିନ୍ତୁ ମାୟା-ଗ୍ରସ୍ତ ପ୍ରାଣୀ ତାହା ବୁଝିପାରେନାହିଁ । ତୃଷ୍ଣା ସର୍ବଦା ସାରା ଜୀବନ ଘର ସଂସାର କାମରେ ବ୍ୟସ୍ତ ରହୁଥିବାରୁ ଭଗବାନଙ୍କୁ ଜାଣିବା ପାଇଁ ଚେଷ୍ଟା କରେ ନାହିଁ । କିନ୍ତୁ ଭକ୍ତ ସଂସାର କାମରେ ରହି ମଧ୍ୟ ଭଜନ କୀର୍ତ୍ତନ, ପୂଜା, ଅତିଥି ସେବା ଦ୍ୱାରା ଭଗବାନଙ୍କୁ ପାଇବା ପାଇଁ ଚେଷ୍ଟା କରେ ଓ ପାଏ ମଧ୍ୟ। ତେଣୁ ତାର ମୁକ୍ତି ହୁଏ ।

## ମୁକ୍ତିର ଉପାୟ

ହରି କୀର୍ତ୍ତନେ ସର୍ବ ସିଦ୍ଧି କଳିର ଏହୁ ମହାବିଧି
ବିଷ୍ଣୁ ଭକତ ଯେତେ ନର କୋଟିକେ ଗୋଟିଏ ମାତର ।
ସ୍ୱର୍ଗ ନରକ ଅବା ମୋକ୍ଷ ସମାନ ଦେଖେ ଯେଉଁ ଲୋକ
ଜନମ ମୃତ୍ୟୁ ସୁଖ ଦୁଃଖ ଭିନ୍ନ ଯେ ଭବେ ଅବିବେକ ।
ଯେ ଦେଖେ ସମ ପରାପର ମିତ୍ର ଅରିରି ନାହିଁ ତାର ।

## * ବିଶେଷ କଥନ *

ଆମ୍ଭେମାନେ ସମସ୍ତେ କଳି ଯୁଗର ଲୋକ । ତେଣୁ ଏହି ଯୁଗର ପ୍ରଭାବରୁ ଅଧିକାଂଶ ଲୋକ, ଅଜ୍ଞାନୀ, ଅଭାଗୁଆ, ପାପୀ ହୋଇଥିବାରୁ ସତ୍‌ଚିନ୍ତା, ସତ୍‌କାର୍ଯ୍ୟ କରନ୍ତି ନାହିଁ । କିନ୍ତୁ ଭଗବାନଙ୍କର କରୁଣା

ସମସ୍ତଙ୍କ ଠାରେ ସମାନ । ତେଣୁ କଳିଯୁଗରେ ଲୋକେ କେବଳ ହରି ସ୍ମରଣ, ହରି ଭଜନ, ହରିସେବା କଲେ ସମସ୍ତ ପାପରୁ ମୁକ୍ତ ହୋଇ ମୃତ୍ୟୁପରେ ବୈକୁଣ୍ଠରେ ବସେ ।

—○—

## କର୍ମ ଫଳ

ଅସାଧୁ କର୍ମ ଯେ କରନ୍ତି — ସେ ଅପରାଧେ ଦଣ୍ଡପାନ୍ତି ।
ବ୍ରାହ୍ମଣ ଅଭିଶାପ ଫଳେ — ଅସୁର କୁଳେ ଜନମିଲେ ।
କଶ୍ୟପ ବୀର୍ଯ୍ୟେ ଦିତୀ ଗର୍ଭେ — ଜନମ ହେଲେ ମହାଦର୍ପେ ।
ଜୟ ବିଜୟ ଦୁଇ ଭାଇ — ଅସୁର କୁଳେ ଜନ୍ମ ହୋଇ ।
ହରିଙ୍କି ଅପରାଧ କଲେ — ତୃତୀୟ ଜନ୍ମେ ନିସ୍ତରିଲେ ।
ଜନ୍ମ ବାସନା କର୍ମ ଫଳେ — ପ୍ରାଣୀ ଭୁଞ୍ଜନ୍ତି ମହୀତଳେ ।

### * ବିଶେଷ କଥନ *

ନାରାୟଣଙ୍କର ଦ୍ୱାରପାଳ ରୂପେ ଜୟ, ବିଜୟ ଦୁଇଭାଇ ବ୍ରାହ୍ମଣଙ୍କ ପ୍ରତି ଅନ୍ୟାୟ କର୍ମ କରିଥିବାରୁ ତାଙ୍କର ଅଭିଶାପ ପାଇ ଅସୁର କୁଳରେ ଜନ୍ମ ହୋଇଥିଲେ । ଏବଂ ତୃତୀୟ ଜନ୍ମ ପରେ ମୁକ୍ତି-ପାଇଥିଲେ । ପ୍ରଥମଜନ୍ମ ହିରଣ୍ୟାକ୍ଷ ହିରଣ୍ୟ କଶିପୁ, ଦ୍ୱିତୀୟଜନ୍ମ ରାବଣ

କୁମ୍ଭକର୍ଣ୍ଣ, ତୃତୀୟ ଜନ୍ମ କଂଶ, କେଶୀ । ତେଣୁ ମନେ ରଖିବା ଉଚିତ୍ ଯେ ଯେପରି କର୍ମ କରେ ସେ ସେହିପରି ଫଳ ପାଇଥାଏ । ପୂର୍ବ ଜନ୍ମର କର୍ମ ଅନୁସାରେ ଏ ଜନ୍ମରେ ମନୁଷ୍ୟ ଉଚ୍ଚ ନୀଚ କୁଳରେ ଜନ୍ମ ହୋଇ ସୁଖ ବା ଦୁଃଖ ଭୋଗକରେ । ଭଗବାନଙ୍କର ଦୃଷ୍ଟିରେ ଉଚ୍ଚ, ନୀଚ ସୁଖୀ ବା ଦୁଃଖୀ ସମସ୍ତେ ସମାନ । ତେଣୁ ମୃତ୍ୟୁପରେ ସମସ୍ତେ ଭଗବାନଙ୍କ ପାଦ ପଦ୍ମରେ ଲୀନ ହୁଅନ୍ତି । ଇତି ।

ଓଁ ନମୋ ଭଗବତେ ବାସୁଦେବାୟ ।

ଷଷ୍ଠ ସ୍କନ୍ଧ ସମାପ୍ତ ।

# ସପ୍ତମ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବ ।

## — ଭକ୍ତ ପ୍ରହ୍ଲାଦ ଉପାଖ୍ୟାନ ଓ ଅସୁରମାନଙ୍କୁ ଉପଦେଶ —

ଅସୁର କୁଳେ ଅବତାର ହିରଣ୍ୟ କଶିପୁ କୁମର ।
ସେ ପ୍ରହଲ୍ଲାଦ ନର ଦେହେ ଭକ୍ତିରେ କୃଷ୍ଣ ପାଦେ ରହେ ।

ବିଷ୍ଣୁ ଭକତ ହୋଇଯେବେ        ଭକତି କରେ ପ୍ରେମ ଭବେ ।
ତାହାକୁ ରଖେ ଭଗବାନ        ନ ସହେ ଭକତ କଷଣ ।
ମାୟାରେ ନାନା ରୂପ ହୋଇ        ସେ ମାୟା  ତାକୁ ନଲଗଇ ।
କେ ଚିନ୍ତେ ତାଙ୍କୁ ଶତ୍ରୁ ଭବେ        କେ ଭଜେ ତାଙ୍କୁ ମିତ୍ର ଭବେ ।
ଅନ୍ତ କାଳେ ଏ ସର୍ବଜନେ        ପଶନ୍ତି ଶ୍ରୀବିଷ୍ଣୁ ଚରଣେ ।
ଆଧି ଉପାଧି ନାଶ ଯାଇ        ଆତ୍ମା କେବେହେଁ ନମରଇ ।
କାହୁଁ ଅଇଲ କାହିଁ ଯିବ        ଏହା ନଜାଣେ ବ୍ରହ୍ମା ଶିବ ।
ସ୍ୱଭବ ପୁରୁଷ ଆୟୁଷ        ଜୀବନ ଶତେକ ବରଷ ।
ବାଳକ ପୌଗଣ୍ଡ କିଶୋରେ        ତ୍ରିଂଶ ବରଷ ତହିଁ ହରେ ।
ତ୍ରିଂଶତି ବର୍ଷ ବୃଦ୍ଧେ ଯାଇ        ବଞ୍ଚଇ ଅସମର୍ଥ ହୋଇ ।
ବାକି ଆୟୁଷ ଯା ରହିଲ        ଗୃହ ବନ୍ଧେ ତା ପାଶୋରିଲ ।
ଏକାନ୍ତେ କାମିନୀର ସଙ୍ଗେ        କାଳକଟାଏ ନାନା ରଙ୍ଗେ ।
ସେ ପତ୍ନୀ ବାକ୍ୟ ଅନୁକ୍ଷଣେ        ଗୁରୁର ମନ୍ତ୍ର ପ୍ରାୟେ ମଣେ ।
ଏ ମୁଢ଼ଭବ ବେଗେ ତେଜ        ଗୋବିନ୍ଦ ପାଦେ ଦୃଢ଼େ ଭଜ ।
ବାଳକେ ମୋର ବୋଲ କର        ବେଳହୁଁ ଗୋବିନ୍ଦ ସୁମର ।
ପୁରୁଷ ଅର୍ଦ୍ଧାଙ୍ଗିନୀ ନାରୀ        ଅର୍ଦ୍ଧେକ କେବା ଦେହ ଧରି ।
ପୁତ୍ର କୁଶଳେ ଶିକ୍ଷାଅର୍ଥେ        ପିତା ଚିନ୍ତଇ ଦିବା ରାତ୍ରେ ।
ଏକଇ ଆତ୍ମା ନରହରି        ତମେ ସକଳ ଘଟ ପୁରି ।

ଅସାଧ୍ୟ ଇନ୍ଦ୍ରିୟଙ୍କ ବଳେ　　　ଗୃହସ୍ଥ ପଡେ ରସାତଳେ ।
ଯେ ହିତକରେ ପର ହୋଇ　　　ତା ତହୁଁ ଆଉ ବନ୍ଧୁ ନାହିଁ ।
ଦୁଷ୍ଟ ନିବାରି ସନ୍ଥ ପାଳୁ　　　ତୁ ନାଥ ପରମ ଦୟାଳୁ ।
ତୋ ପାଦେ ପଶିଲି ଶରଣ　　　ମୋତେ ଉଦ୍ଧର ନାରାୟଣ ।

* ବିଶେଷ କଥନ *

ଅସୁର ବଂଶରେ ଅବତାର ରୂପେ ଜନ୍ମିଥିବା ପ୍ରହଲ୍ଲାଦ ଗୁରୁ ଗୃହରେ ରହି ପାଠ ପଢୁଥିଲ ବେଳେ ଅସୁର ବାଳକ ମାନଙ୍କୁ ବୁଝାଇ କହିଲେ, ମନୁଷ୍ୟର ଆୟୁଷ ସାଧାରଣତଃ ୧୦୦ ବର୍ଷ । ସେଥିରୁ ପ୍ରଥମ ୨୦ ବର୍ଷ ବାଲ୍ୟାବସ୍ଥାରେ କଟିଯାଏ ଶେଷ ୨୦ ବର୍ଷ ବୃଦ୍ଧାବସ୍ଥାରେ ଜରଜୀର୍ଣ୍ଣ ଅବସ୍ଥାରେ ବହୁରୋଗ, ଅନାଦର, ଦୁଃଖ, କଷ୍ଟରେ କଟିଥାଏ । ମଝିରେ ବାକି ୬୦ ବର୍ଷ ସଂସାର ବନ୍ଧନରେ କଟିଯାଏ, ଅର୍ଥାତ୍ ଏକାନ୍ତରେ ସ୍ତ୍ରୀ ସଙ୍ଗେ ନାନା ରଙ୍ଗରେ ମାତେ ସ୍ତ୍ରୀ ବାକ୍ୟକୁ ଗୁରୁ ମନ୍ତ୍ର ପ୍ରାୟ ମନେ କରି, ନାନା କଷ୍ଟ ସହି ଧନ ଅର୍ଜନ କରି ପରିବାରର ମନରଞ୍ଜନ କରେ । ତୁମ୍ଭେମାନେ ଏ ମୂଢ ପଣକୁ ତ୍ୟାଗ କରି ବୃଦ୍ଧାବସ୍ଥାପୂର୍ବରୁ ଗୋବିନ୍ଦ ସ୍ମରଣ ଭଜନରେ ମନଦେଇ ତାଙ୍କର ଭକ୍ତ ହୁଅ । ତେବେ ତୁମର ଜନ୍ମ ଓ ଜୀବନ ସାର୍ଥକ ହେବ ଏବଂ ମୁକ୍ତି ମିଳିବ । ତଥାପି ସ୍ତ୍ରୀ ପୁରୁଷ ଅର୍ଦ୍ଧାଙ୍ଗିନୀ ସ୍ତ୍ରୀ ଚରିତ୍ରରେବହୁ ଦୋଷ

ଥିଲେ ମଧ୍ୟ ପୁରୁଷ ଅଧା ଅଙ୍ଗରେ ବଞ୍ଚି ପାରିବ ନାହିଁ । ସ୍ୱାମୀ ସ୍ତ୍ରୀ ମିଳନରେ ଗୋଟିଏ ଆତ୍ମା ଅନ୍ୟଟିରେ ମିଶି ଗୋଟିଏ ମନୁଷ୍ୟ ବା ପୁରୁଷ ହୁଏ । ତେଣୁ ସ୍ୱାମୀ ସ୍ତ୍ରୀ ଗୋଟିଏ ଆତ୍ମା । ପିତା ପୁତ୍ରର ଶିକ୍ଷା ପାଇଁ ସବୁବେଳେ ଚିନ୍ତିତ । ଯେ ପରର ଉପକାର କରେ ତା ଠାରୁ ବଡ ବନ୍ଧୁ ଆଉ କେହି ନାହିଁ । ଭଗବାନ ଦୁଷ୍ଟ ମାନଙ୍କୁ ସଂହାର କରି ସନ୍ଥମାନଙ୍କ ପାଳନ କରନ୍ତି ତୁମ୍ଭେମାନେ ଏହି ବାଲ୍ୟବସ୍ଥାରୁ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ସଂସାରିକ ସମସ୍ତ କର୍ମ କରି ମଧ୍ୟ ଜୀବନର ସମସ୍ତ କର୍ମ ଭଗବାନଙ୍କୁ ସମର୍ପଣ କରି ତାଙ୍କର ଶରଣ ପଶିଯିବା ଉଚିତ୍, ତେଣୁ ତୁମେ ଭକ୍ତ ରୂପେ ମୁକ୍ତି ପାଇବ । ଏହିହିଁ ମନୁଷ୍ୟ ଜନ୍ମର ଉଦ୍ଦେଶ୍ୟ ଓ କର୍ତ୍ତବ୍ୟ ।



## ମନୁଷ୍ୟର କର୍ତ୍ତବ୍ୟ

ତପ ଶଉଚ ଶମ ଦମ — ଶାନ୍ତି ସନ୍ତୋଷ ବିପ୍ର ଧର୍ମ
ତେଜ ମଉର୍ଯ୍ୟ ଧୀର୍ଯ୍ୟ ଧୃତି — ତ୍ୟାଗ ସଂଯମ ସତ୍ୟକ୍ଷାନ୍ତି
ନିତ୍ୟ ପ୍ରସନ୍ନ ବିପ୍ର ରକ୍ଷା — କ୍ଷତ୍ରିୟ ଲକ୍ଷଣ ଏ ଦୀକ୍ଷା
କୃଷି ବାଣିଜ୍ୟ ଗୋପାଳନ — ବୈଶ୍ୟର ଏ ତିନି ଲକ୍ଷଣ
ସାଧୁ ବିନୟ ଶୌଚକର୍ମ — ଶୁଦ୍ର ଜନର ସେବା ଧର୍ମ
ସ୍ୱଧର୍ମ କଲେ ସ୍ୱର୍ଗେ ବାସ — ଅଧର୍ମେ ନରକେ ପ୍ରବେଶ
ପ୍ରବୃତ୍ତି ମାର୍ଗେ ନର ଦୁଃଖୀ — ନିବୃତ୍ତି ମାର୍ଗେ ହୁଏ ସୁଖୀ ।

## * ବିଶେଷ କଥନ *

ବ୍ରାହ୍ମଣର କର୍ତ୍ତବ୍ୟ—ଦେଶସେବା, ସଦା ସନ୍ତୋଷ, ଯଜ୍ଞ, ଦାନ ସତ୍‌କର୍ମ, ସଦାପବିତ୍ର, ପରୋପକାର ପ୍ରଭୃତି ।
କ୍ଷତ୍ରୀୟର କର୍ତ୍ତବ୍ୟ — ଯୁଦ୍ଧ, ପ୍ରଜାପାଳନ, ତ୍ୟାଗ, ସଂଯମ ପ୍ରଭୃତି
ବୈଶ୍ୟର କର୍ତ୍ତବ୍ୟ—କୃଷି ବାଣିଜ୍ୟ ବ୍ୟବସାୟ ଗୋପାଳନ ।
ଶୁଦ୍ରର କର୍ତ୍ତବ୍ୟ — ସାଧୁ, ଶୌଚ, ନମ୍ରତା, ସହିତ ସମସ୍ତଙ୍କର ସେବା କରିବା । ନିଜନିଜ ଧର୍ମ ଅନୁସାରେ କର୍ମକଲେ ସ୍ୱର୍ଗବାସ ହୁଏ ନିଜ ଧର୍ମଛାଡ଼ି ଅନ୍ୟଧର୍ମ ଗ୍ରହଣକଲେ ନର୍କବାସ ହୁଏ । ତେଣୁ ଆସକ୍ତି ତ୍ୟାଗକରି ସାଂସାରିକ ସମସ୍ତ କର୍ମକରି ଭଗବାନଙ୍କୁ ସମର୍ପଣ କରି-ଦେଇ ତାଙ୍କଠି ଶରଣ ପଶିଗଲେ ନର ସୁଖିହୁଏ । ମାୟାରେ ମୋହିତ ହୋଇ ଯେ ଭବେ ଏ ଧନ ସମ୍ପତ୍ତି, ପୁତ୍ର ଭରିଜା ସବୁ ମୋର, ମୁଁ କରିଛି ବୋଲି ଗର୍ବ କରେ ସେ ନର୍କରେ ପଡେ ।



## ଅବଧୂତ ଉବାଚ

ଆହାରେ ଭଲ ମନ୍ଦ ନାହିଁ      ଯେ ସ୍ଥାନେ ଯେମନ୍ତେ ମିଳଇ ।
ସ୍ୱାଦ ଅସ୍ୱାଦ ନ ବାଚଇ      ଭୋଜନ ଅମୃତ ମଣଇ ।

ଯାବତ ଦେହେ ପ୍ରାଣ ଥିବ — ତାବତ ସନ୍ତୋଷେ ବଞ୍ଚିବ ।
ଦେବତା ଋଷି ପ୍ରାଣୀ ଗଣେ — ଆତ୍ମା, ଅତିଥି, ଗୁରୁଜନେ ।
ଏହାଙ୍କୁ ବିଷ୍ଣୁ ପ୍ରାୟ ମଣି — ସନ୍ତୋଷେ ଦେବ ଅନ୍ନପାଣି ।
ନିଗେଳେ ବସି ଶୁଦ୍ଧାସନେ — ସାଧିବ ପ୍ରାଣାୟାମ ଧ୍ୟାନେ ।
ପ୍ରାଣ ଅପାନ କରି ଏକ — ପୂରକ କୁମ୍ଭକ ରେଚକ ।
ଯେ ତାଙ୍କୁ ଯେମନ୍ତ ଚିନ୍ତଇ — ହୃଦୟେ ସେ ତାଙ୍କୁ ଦେଖଇ ।
ଭବ ପ୍ରମାଣେ ଦୃଶ୍ୟ ହୁଏ — ଦର୍ପଣେ ପ୍ରତିବିମ୍ବ ପ୍ରାୟେ ।

* ବିଶେଷ କଥନ *

ସ୍ନାନ ଶୌଚପରେ ସକାଳେ ବା ସନ୍ଧ୍ୟା ବେଳେ ନିର୍ଜନ ସ୍ଥାନରେ ଶୁଦ୍ଧାସନରେ ବସି ଭକ୍ତ ପ୍ରାଣାୟାମ କରିବା ଉଚିତ୍ । ପ୍ରାଣାୟମ— ପୂରକ ଅର୍ଥାତ୍ ୨ ସେକେଣ୍ଡ ବାମପୁଡା ବାଟେ ପ୍ରଶ୍ୱାସ ନେଇ କୁମ୍ଭକ ଅର୍ଥାତ୍ ୮ସେକେଣ୍ଡ ଶ୍ୱାସ ବନ୍ଦକରି ରେଚକ ଅର୍ଥାତ୍ ୪ସେକେଣ୍ଡରେ ନିଃଶ୍ୱାସ ଡାହାଣ ପୁଡା ବାଟେ ବାୟୁ ତ୍ୟାଗ କରିବାକୁ ପ୍ରାଣାୟମ କୁହାଯାଏ । ଏହିପରି ୧୦ଥର କରି ପାରିବେ ସେତିକି କରିବା ଉଚିତ୍ । ଏପରି କଲେ ହୃଦୟ ମନ ପବିତ୍ର ଓ ନିର୍ମଳ ହୁଏ । ଏବଂ ଧ୍ୟାନରେ ଦର୍ପଣରେ ନିଜର ପ୍ରତିବିମ୍ବ ଦେଖିଲା ଭଳି ଭଗବାନଙ୍କୁ ଦେଖିହୁଏ ।

ଓଁ ନମୋ ଭଗବତେ ବାସୁଦେବାୟ

ଇତି । ସପ୍ତମ ସ୍କନ୍ଧ ସମାପ୍ତ ।

# ଅଷ୍ଟମ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ ।
ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ
ଯତ୍‌କୃପାତମହଂ ବନ୍ଦେ ପରମାନନ୍ଦ ମାଧବଂ ।

## ଗଜ ଉଦ୍ଧାରଣ

ହେ ଜ୍ଞାନମୟ ଭଗବାନ ଘେନ ମୋ ପ୍ରଣାମ ଜଣାଣ ।
ପଶିଲି ଶରଣ ତୋହର ଏ ଗ୍ରାହ ହସ୍ତୁ ଛାଡ଼ିକର ।
ରଖୁ ନ ରଖୁ ତୁ ଜାଣଇ ତୋ ବିନୁ ଅନ୍ୟ ଗତି ନାହିଁ ।
ଯେଣୁ ଗୋବିନ୍ଦେ ଭଜୁଥିଲି ଯେ ଭାବେ ହରି ସୁମରିଲି ।
ତାହାର ସ୍ତୁତି ବାକ୍ୟ ଶୁଣି ଶୂନ୍ୟେ ପ୍ରକାଶ ଚକ୍ରପାଣି ।
ତକ୍ଷଣେ ଗଜ ମୋକ୍ଷ କରି ନିଜ ଭୁବନେ ଗଲେ ହରି ।

## * ବିଶେଷ କଥନ *

ବିପଦେ ପଡ଼ି ଯେ ଆତୁର ହୋଇ ଭଗବାନଙ୍କୁ ଡାକେ ଭଗବାନ ତାର ଡାକ ଶୁଣନ୍ତି ଓ ସାଙ୍ଗେ ସାଙ୍ଗେ ତାକୁ ବିପଦରୁ ରକ୍ଷା କରନ୍ତି ହାତୀର କରୁଣ ପ୍ରାର୍ଥନା ଶୁଣି ଭଗବାନ କୁମ୍ଭୀର କବଳରୁ ହାତୀକୁ ମୁକ୍ତ କରି ବୈକୁଣ୍ଠକୁ ଗମନ କଲେ ।

—**—

## ବଳି ସ୍ୱର୍ଗ ଜିଣିବା ପରେ

ଯେବେ ଦୁର୍ବାସା ମୁନି କ୍ରୋଧ — ହରିଲା ଇନ୍ଦ୍ରର ସମ୍ପଦ ।
ଲକ୍ଷ୍ମୀ ବିହୁନେ ସୃଷ୍ଟି ନାଶ — ସଂସାରେ ଘୋର ତମ ଗ୍ରାସ ।
ବ୍ରହ୍ମା ସହିତେ ଦେବ ବୃନ୍ଦ — ସର୍ବେ ବନ୍ଦିଲେ ବିଷ୍ଣୁ ପାଦ ।
ଦେବଙ୍କ ସ୍ତୁତି ବାକ୍ୟ ଶୁଣି — ଦୟା ସାଗର ଚକ୍ରପାଣି ।
ପ୍ରସନ୍ନ ଚିତ୍ତେ ଭବଗ୍ରାହୀ — କହନ୍ତି ବ୍ରହ୍ମାମୁଖ ଚାହିଁ ।
ଯାବତ ସିଦ୍ଧି ନୋହି କାର୍ଯ୍ୟ — ତାବତ ମିତ୍ର ଭାବେ ଭଜ ।
ସର୍ବେ ବିଶ୍ୱାସ ରୂପ ବହି — ଅସୁରଙ୍କର ମିତ୍ର ହୁଅ ।
ଆପଣା କାର୍ଯ୍ୟ ସିଦ୍ଧି ଅର୍ଥେ — ଶତ୍ରୁଙ୍କୁ ଭଜନ୍ତି ସମସ୍ତେ ।
କାର୍ଯ୍ୟ ସଫଳ କରି ଶେଷେ — ରହନ୍ତି ନିଜ ସ୍ୱାର୍ଥ ଆଶେ ।

* ବିଶେଷ କଥନ –

ଅସୁର ରାଜା ବଳି ସ୍ୱର୍ଗ ମର୍ତ୍ତ୍ୟ ଜୟ କରି ଭୟଙ୍କର ଉତ୍ପାତ ସୃଷ୍ଟି କରିବାରୁ ବ୍ରହ୍ମା ସହିତେ ଦେବଗଣ ବିଷ୍ଣୁଙ୍କୁ ଜଣାଇଲେ । ଶତ୍ରୁମାନଙ୍କୁ କପଟ ପରାସ୍ତ କରାଯାଏ । ବିଷ୍ଣୁ ଦେବତାମାନଙ୍କୁ ଜଣାଇ ଦେଇ କହିଲେ ପ୍ରଥମେ ଉପର ଠାଉରିଆ ଭାବେ ଶତ୍ରୁମାନଙ୍କଠାରେ ବିଶ୍ୱାସ ସ୍ଥାପନ କରି ତାଙ୍କର ମିତ୍ର ହୁଅ । ନିଜର ସ୍ୱାର୍ଥ ହାସଲ କଲା ପରେ ସେମାନଙ୍କୁ ତ୍ୟାଗ କର ।

—*—

## ସମୁଦ୍ର ମନ୍ଥନ

ଶୁକ କହନ୍ତି ଗଙ୍ଗାକୂଳେ      ପରୀକ୍ଷିତଙ୍କୁ ଋଷି ମେଳେ ।
ଲକ୍ଷ୍ମୀଙ୍କ ପ୍ରସଙ୍ଗେ ମୁରାରି      କମଳା ରୂପେ ପ୍ରୀତି କରି ।
ଯେ ରୂପେ ସାଗର ମନ୍ଥିଲେ      ଦେବଗଣଙ୍କୁ ସୁଧା ଦେଲେ ।
ଦେବ ଦେବ ଯେ ଭୂତପତି      ସ୍ୱାମୀଙ୍କୁ ବୋଇଲେ ପାର୍ବତୀ ।
ତା ଜନ୍ମ ଧନ୍ୟ ଏ ସଂସାରେ      ଯେ ରହେ ପର ଉପକାରେ ।
କ୍ଷଣ ଭଙ୍ଗୁର ଏ ସଂସାର      ସୁକୃତି ପର ଉପକାର ।
ଧର୍ମ କରନ୍ତି ଯେଉଁ ନର      ତାହାଙ୍କୁ ରଖେ ଚକ୍ରଧର ।
ଏମନ୍ତେ ବାଣୀଙ୍କ ବଚନେ      ରୁଦ୍ର ଉଠିଲେ ତୋଷ ମନେ ।
ଉତ୍କଟ ଘୋର ମହାବିଷ      ଏକା ଅରକ୍ଷେ କଲେ ଗ୍ରାସ ।
ନୀଳକଣ୍ଠ ନାମେ ବିଖ୍ୟାତ      କେ ଅଛୁ ଏପରି ମହତ ।

### * ବିଶେଷ କଥନ *

ସମୁଦ୍ର ମନ୍ଥନ ବେଳେ ଯେଉଁ ବିଷ ଓ ଅମୃତ ବାହାରିଥିଲା ଦେବତାମାନେ କହିଲେ ଏ ବିଷ ଅସୁରମାନେ ଖାଇଲେ ହଜମ କରି ପାରିବେ, ନଚେତ ପୃଥିବୀ ଧ୍ୱଂସ ହୋଇଯିବ । ତେଣୁ ଅସୁରମାନେ ଏଥିରେ ରାଜି ନ ହେବାରୁ ଶିବ ଏହି ବିଷପାନ କରି ପୃଥିବୀକୁ ଧ୍ୱଂସ ମୁଖରୁ ରକ୍ଷା କରିଥିଲେ । ତେଣୁ ଏପରି ମହତ ଉପକାର କରି ଶିବ ନୀଳକଣ୍ଠ ନାମରେ ବିଖ୍ୟାତ ହେଲେ ।

## ଅମୃତ ବଣ୍ଟନ

ଅମୃତ କୁମ୍ଭ ତଥି ପରେ   ଥିଲା ଯେ ଧନ୍ୱନ୍ତରୀ କରେ ।
ସେ କୁମ୍ଭ ଅପହର ବଳେ   ଅସୁରେ ଖରେ ପଳାଇଲେ ।
ଏମନ୍ତ ସମୟେ ମୁରାରି   ତକ୍ଷଣେ ମାୟା ରୂପ ଧରି ।
ସ୍ୱରୂପ ହୋଇଲେ କାମିନୀ   ଅପୂର୍ବ ସୁନ୍ଦରୀ ମୋହିନୀ ।
ମାୟାରେ ଅସୁରେ ମୋହିଲେ   ବିସ୍ମୟେ ଅନାଇ ରହିଲେ ।
ଦୂରେ ଯେ ଦେବଗଣେ ଥିଲେ   କୃଷ୍ଣ ତାହାଙ୍କୁ ସୁଧା ଦେଲେ ।
ନିଜ ଭୁବନେ ଗଲେ ହରି   ଶୁଣ ପରୀକ୍ଷ ଦଣ୍ଡଧାରୀ ।

### * ବିଶେଷ କଥନ *

ସମୁଦ୍ର ମନ୍ଥନରୁ ବାହାରିଥିବା ଅମୃତ କୁମ୍ଭଟିକୁ ଅସୁରମାନେ ବଳପୂର୍ବକ ଧନ୍ୱନ୍ତରୀଙ୍କ ହାତରୁ ଛଡ଼ାଇ ନେଇ ଦୂରକୁ ପଳାଇଲେ । ତେଣୁ ଭଗବାନ ବିଷ୍ଣୁ ଭାବିଲେ ଯଦି ଏହି ଅମୃତକୁ ଅସୁରମାନେ ଖାଇଯିବେ, ତେବେ ସବୁ ଅସୁର ଅମର ହୋଇଯିବେ । ତେଣୁ ଲକ୍ଷ୍ମୀଙ୍କ ଅନୁରୋଧରେ ବିଷ୍ଣୁ ଅପୂର୍ବ ସୁନ୍ଦରୀ ରୂପ ଧାରଣ କରି ଅସୁରମାନଙ୍କୁ ମାୟାରେ ଏପରି ମୋହିତ କଲେ ଯେ ଅମୃତ କୁମ୍ଭ କଥା ଭୁଲିଯାଇ ସେହି ସୁନ୍ଦରୀକୁ ଚାହିଁ ରହିଲେ । ଏହି ସମୟରେ ଶ୍ରୀକୃଷ୍ଣ ଅମୃତ କୁମ୍ଭଟିକୁ ନେଇ ଦୂରରେ ଥିବା ଦେବତାମାନଙ୍କୁ ବାଣ୍ଟିଦେଲେ । ତା'ପରେ

ଭଗବାନ ବିଷ୍ଣୁ ବୈକୁଣ୍ଠକୁ ଚାଲିଗଲେ । ଏକଥା ଅସୁରମାନେ ବୁଝିପାରି ଦେବତାମାନଙ୍କ ସହ ଘୋର ଯୁଦ୍ଧ କରିଥିଲେ । ଅସୁରମାନଙ୍କର ରାଜା ଦାନବୀର ବଳି ସ୍ୱର୍ଗ ଜୟ କରିଥିଲା ।



## ବାମନରୂପୀ ଭଗବାନ ବିଷ୍ଣୁ

ଶୁଭ ଅଶୁଭ ଘଟଣାରେ    କାଳ କ୍ରୀଡ଼ଇ ଅଦୃଶ୍ୟରେ ।
ଯା ଘରୁ ଅତିଥି ବାହୁଡ଼େ    ସେ ପ୍ରାଣୀ ପ୍ରେତ ମୁଖେ ପଡ଼େ ।
କାଳର ବଶ ଏ ସଂସାର    କେ ପର କେ ଅବା ନିଜର ?
ଅର୍ଜିଲା କର୍ମର ଆୟତ୍ତେ    ପ୍ରାଣୀଏ ଭୁଞ୍ଜନ୍ତି ଜଗତେ ।
ସତ୍ୟ ଉପରେ ଧର୍ମ ନାହିଁ    ମିଥ୍ୟା ଭାଷକୁ ମୁଁ ଡରଇ ।
ପ୍ରାଣୀଙ୍କ ହିତେ ସାଧୁ ଜନ    ତ୍ୟଜନ୍ତି ଏ ଧନ ଜୀବନ ।
ଜାଣେ ମୁଁ ମିଥ୍ୟ ଏ ସଂସାର    କେ ମିତ୍ର କେବା ନିଜ ପର ।
କେବା ଜନନୀ ତାତ ସୁତ    କିବା ସମ୍ପଦ ଏ ଜଗତ ।
ପତ୍ନୀ ତନୟ କେହି ନୋହେ    ସବେ ଅଛନ୍ତି ମାୟା ମୋହେ ।
ମୁଁ ଯାକୁ ଅନୁଗ୍ରହ କରେ    ସର୍ବ ସମ୍ପତ୍ତି ତାର ହରେ ।
ଜନ୍ମ ବୟସ କର୍ମ ରୂପ    ବିଦ୍ୟା ଐଶ୍ୱର୍ଯ୍ୟ ଧନାଧିପ ।
ଏ ସର୍ବ ଗର୍ବ ଯାଉନାହିଁ    ମୋ ହର ଅନୁଗ୍ରହ ବିହୁଁ ।
ବଳି ତ୍ରିପାଦ ଭୂମି ଦେଲା    ବିଷ୍ଣୁର ପାଦେ ସେ ରହିଲା ।

## * ବିଶେଷ କଥନ *

ମନୁଷ୍ୟର କର୍ମ ଅନୁସାରେ ଅଦୃଶ୍ୟ ଶକ୍ତି (ଭଗବାନ) ମଙ୍ଗଳ ବା ଅମଙ୍ଗଳ କରେ । ମହାଦାନୀ ହେଲେ ମଧ୍ୟ ବଳି ଅନ୍ୟାୟରେ ସ୍ୱର୍ଗ ଜୟ କରିବାରୁ ଇନ୍ଦ୍ରପଦ ଲାଭ କରିଥିଲା । ତେଣୁ ବାମନରୂପୀ ଭଗବାନ ବ୍ରାହ୍ମଣ ରୂପରେ ବଳିକୁ ତ୍ରିପାଦ ଭୂମି ଦାନ ମାଗିଥିଲେ । ମହାଦାନୀ ବଳି ମଧ୍ୟ ତ୍ରିପାଦ ଭୂମି ଦାନ ଦେବାକୁ ସତ୍ୟ କଲା, କିନ୍ତୁ ଅସୁର ଗୁରୁ ଶୁକ୍ରାଚାର୍ଯ୍ୟ ବଳିକୁ ଚେତାଇ କହିଲେ, ଏ ବାମନ ରୂପୀ ବ୍ରାହ୍ମଣ ଭିକାରି ନୁହେଁ । ଏ ସ୍ୱୟଂ ଭଗବାନ । ତୋତେ ପରୀକ୍ଷା କରିବା ପାଇଁ ଆସିଛି, ତୋର ସମସ୍ତ ସମ୍ପତ୍ତି ହରଣ କରିବ, ତେଣୁ ଏ ବ୍ରାହ୍ମଣକୁ ତ୍ରିପାଦ ଭୂମି ଦାନ ଦେବା ଉଚିତ ନୁହେଁ । ଏହା ଶୁଣି ବାମନରୂପୀ ବ୍ରାହ୍ମଣ ବଳିକୁ ଉଚ୍ଚ ଉପଦେଶ ଦେଇ କହିଲେ, ସତ୍ୟ-ଠାରୁ ବଡ଼ ଧର୍ମ ନାହିଁ । ମୁଁ ଜାଣେ ଏ ସଂସାର ମାୟାବଦ୍ଧ, ପିତା, ମାତା, ସ୍ତ୍ରୀ, ପୁତ୍ର କେହି କାହାର ନୁହେଁ । ସମସ୍ତେ ମାୟାବଦ୍ଧ ଥିବାରୁ ନିଜର ବୋଲି ମନେ କରନ୍ତି । ଯାହାର ବିଦ୍ୟା, ଧନ ସମ୍ପତ୍ତି, ଆଧିପତ୍ୟ, ପଦପଦବୀ ଗର୍ବ ନାହିଁ । ମୁଁ ତାକୁ ଅନୁଗ୍ରହ କରେ । ଯାହାଘରୁ ଅତିଥି ନିରାଶ ହୋଇ ଫେରିଯାଏ, ସେ ନର୍କରେ ପଡ଼େ । ତୁ ତ ତ୍ରିପାଦ ଭୂମି ଦେବାକୁ ସତ୍ୟ କରିଛୁ ଏବେ ମୁଁ ଯଦି ନିରାଶ ହୋଇ ଫେରିଯାଏ ତୋର ଦଶା କ'ଣ ହେବ ? ଏହା ଶୁଣି ବଳି ଗୁରୁ

ଶୁକ୍ରାଚାର୍ଯ୍ୟଙ୍କ ଆଦେଶକୁ ନ ମାନି ତ୍ରିପାଦ ଭୂମି ବାମନରୂପୀ ଭଗବାନଙ୍କୁ ଦାନ କଲେ ଏବଂ ବିଷ୍ଣୁ ପାଦରେ ଲୀନ ହୋଇ ବୈକୁଣ୍ଠରେ ବାସ କଲେ ।

ଓଁ ନମୋ ଭଗବତେ ବାସୁଦେବାୟ । ଇତି ।

ଅଷ୍ଟମ ସ୍କନ୍ଧ ସମାପ୍ତ

— * —

# ନବମ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଽଜୟ ମୁଦୀରୟେତ୍ ।
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

## ଚ୍ୟବନ ଋଷିଙ୍କ ଯୌବନ ପ୍ରାପ୍ତି

ନିଜ ସ୍ୱାମୀଙ୍କୁ ଉପେକ୍ଷିଲୁ — କୁଳ ଦୂଷଣ କର୍ମ କଲୁ ।
ଜାର ପୁରୁଷେ କଲୁ ମତି — ଏ ବଡ଼ ତୋହର ଅନୀତି ।
ଉଭୟ କୁଳ କଲୁ ନାଶ — ପର ପୁରୁଷେ ତୋ ବିଶ୍ୱାସ ।
ଏ କାର୍ଯ୍ୟେ ପିତା ପତି ବଂଶ — ନରକେ କରାଇଲୁ ବାସ ।

ହେ ନୃପ ମୁଁ ଭୃଗୁ ନନ୍ଦନ     ଚ୍ୟବନ ଋଷି ମୋର ନାମ ।
ଅଶ୍ୱିନୀ କୁମାର ଯା କଲେ     ଚ୍ୟବନ ସମସ୍ତ କହିଲେ ।
ଶର୍ଯ୍ୟାତି କନ୍ୟା ତୋଷ ହେଲି     ପିତାଙ୍କୁ ସମସ୍ତ କହିଲି ।
କହିଲି ପିତା ପାଦେ ନମି     ଏ ଯୁବା ମୋର ନିଜ ସ୍ୱାମୀ ।
ଶର୍ଯ୍ୟାତି ସନ୍ତୁଷ୍ଟ ହୋଇଲି     ବରକନ୍ୟାଙ୍କୁ ଗୃହେ ନେଲି ।

## * ବିଶେଷ କଥନ *

ଦିନେ ଶର୍ଯ୍ୟାତି ରାଜାଙ୍କର ରାଜକନ୍ୟା ସହଚରୀମାନଙ୍କ ସହିତ ବନରେ ବୁଲୁ ବୁଲୁ ଗୋଟିଏ ହୁଙ୍କାରେ ଜୁଳୁ ଜୁଳୁ କରୁଥିବା ଦୁଇଟି ଆଖିଦେଖି ଗୋଟିଏ କଣ୍ଟାରେ ୨ଟି ଆଖିକୁ ଫୋଡ଼ି ଦେବାରୁ ଧାର ଧାର ହୋଇ ରକ୍ତ ବାହାରିଲା ଏବଂ ହଠାତ୍ ହୁଙ୍କାରୁ ଗୋଟିଏ ଜରାଜୀର୍ଣ୍ଣ ବୃଦ୍ଧ ବାହାରି ଆସି ରାଜଯେମାଙ୍କୁ ଅଭିଶାପ ଦେଲା ଏବଂ କହିଲା ତୋ ଛଡ଼ା ରାଜବଂଶର ସମସ୍ତଙ୍କର ମୂତ୍ରରୋଧ ହେଉ । ସାଙ୍ଗେ ସାଙ୍ଗେ ରାଜପରିବାର ସମସ୍ତଙ୍କର ମୂତ୍ରରୋଧ ହେବାରୁ ଭୟଙ୍କର ଯନ୍ତ୍ରଣା ପାଇ ଚିତ୍କାର କରୁଥିବା ସମୟରେ ରାଜ ଯେମା ରାଜାଙ୍କୁ ସମସ୍ତ ଘଟଣା କହିଲେ । ରାଜା କାଳ ବିଳମ୍ବ ନକରି ରାଜଯେମାଙ୍କ ସହ ସେହି ହୁଙ୍କା ନିକଟରେ ପହଞ୍ଚି ଋଷିଙ୍କ ପାଦତଳେ ପ୍ରଣାମ କରି ଏ ଅଭିଶାପରୁ ମୁକ୍ତ କରିବା ପାଇଁ ପ୍ରାର୍ଥନା କଲେ ଏବଂ ରାଜଯେମାଙ୍କୁ ତାଙ୍କ ସହିତ ବିବାହ କରି ଦେବା ପାଇଁ ପ୍ରତିଶ୍ରୁତି ଦେଲେ । ଚ୍ୟବନ ଋଷି ସନ୍ତୁଷ୍ଟ ହୋଇ

ସମସ୍ତଙ୍କୁ ଅଭିଶାପରୁ ମୁକ୍ତକଲେ ଶର୍ଯ୍ୟାତି ସେହି ବୃଦ୍ଧଙ୍କ ସହିତ କନ୍ୟାକୁ ବିବାହ ଦେଇ ଘରକୁ ଫେରି ଆସିଲେ । ରାଜ ଯେମା ସେହି ବୃଦ୍ଧ ସ୍ୱାମୀଙ୍କ ସହ ସେହି ହୁଙ୍କା ନିକଟରେ ଥିବା କୁଟୀରରେ ବାସ କରୁଥିଲେ । ଦିନେ ଚ୍ୟବନ ଋଷି ନିକଟସ୍ଥ ପୁଷ୍କରଣୀରେ ସ୍ନାନ କରି ତପସ୍ୟାରତ ଥିବାବେଳେ ରାଜଯେମା ପୁଷ୍କରିଣୀ କୂଳରେ ବସି ଅନ୍ଧ ସ୍ୱାମୀଙ୍କର ସ୍ନାନ ଓ ତପସ୍ୟା ଦେଖୁଥିବା ବେଳେ ସ୍ୱର୍ଗରୁ ଅଶ୍ୱିନୀ କୁମାର ଦ୍ୱୟ ସେଠାରେ ଆସି ଉପସ୍ଥିତ ହେଲେ । ଏହି ସମୟରେ ଅନ୍ଧ ଚ୍ୟବନ ତପସ୍ୟା ଓ ପ୍ରାର୍ଥନା ସାରି ପୁଣି ଥରେ ଜଳବୁଡ଼ି ସ୍ନାନ କରିବା ବେଳେ ଅଶ୍ୱିନୀ କୁମାର ତାଙ୍କର ତପସ୍ୟାରେ ମୁଗ୍ଧ ହୋଇ ତାଙ୍କୁ ନବ ଯୌବନରେ ପରିଣତ କରି ସଙ୍ଗେ ସଙ୍ଗେ ବୈକୁଣ୍ଠକୁ ଗମନ କଲେ । ରାଜଯେମା ସମସ୍ତ ଘଟଣା ସ୍ୱଚକ୍ଷୁରେ ଦେଖି ଯୁବ ସ୍ୱାମୀଙ୍କୁ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ । ଏବଂ ସ୍ୱାମୀ ସହିତ ସେହି କୁଟୀରରେ ବାସ କରୁଥିବା ବେଳେ ଦିନେ ଶର୍ଯ୍ୟାତି ସେଠାରେ ଆସି ପହଞ୍ଚିଲେ । ଜଣେ ଯୁବକସହିତ ରାଜଯେମାଙ୍କୁ ଦେଖି ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ କନ୍ୟାକୁ ବହୁ ନିନ୍ଦା କଲେ ଏବଂ କହିଲେ ତୋର ବୃଦ୍ଧ ସ୍ୱାମୀଙ୍କୁ ତ୍ୟାଗକରି ପର ଯୁବକ ସହିତ ସମ୍ବନ୍ଧ କରି ତୋର ପିତା ଓ ପତି ବଂଶର ସମସ୍ତଙ୍କୁ ନର୍କରେ ପକାଇଲୁ । ରାଜ-ଯେମା ହୋଇ ଏହିପରି ଭ୍ରଷ୍ଟାଚାରିଣୀ ହୋଇ ଉଭୟ କୂଳରେ କଳଙ୍କ ଲଗାଇଲୁ । ଏ କଥା ଶୁଣି ଯୁବକ ଚ୍ୟବନ ରାଜାଙ୍କୁ ପ୍ରଣାମ କରି

କହିଲେ, ହେ ରଜା, ମୁଁ ଭୃଗୁ ଋଷିଙ୍କର ପୁତ୍ର । ମୁଁ ବୃଦ୍ଧ ନୁହେଁ, ତପସ୍ୟାରେ ମୋ ଶରୀର ଜରାଜୀର୍ଣ୍ଣ ହୋଇଯାଇଥିଲା । ସ୍ୱର୍ଗରୁ ଅଶ୍ୱିନୀ କୁମାର ଦ୍ୱୟ ଆସି ମୋର ତପସ୍ୟାରେ ମୁଗ୍ଧ ହୋଇ ମୋତେ ନବ ଯୌବନରେ ପରିଣତ କରି ଅନ୍ତର୍ଦ୍ଧାନ ହୋଇଗଲେ । ରଜଯେମା ମଧ୍ୟ ଦେଖିଥିବା ସମସ୍ତ ଘଟଣା ବର୍ଣ୍ଣନା କରି କହିଲେ, "ହେ ପିତା" ଏ ଯୁବା ମୋର ନିଜ ସ୍ୱାମୀ, ଅଶ୍ୱିନୀ କୁମାରଙ୍କ କୃପାରୁ ସେ ତାଙ୍କର ପୂର୍ବ ଯୌବନ ପ୍ରାପ୍ତ ହେବା ମୁଁ ସ୍ୱଚକ୍ଷୁରେ ଦେଖିଛି । ଏହା ଶୁଣି ରଜା ସନ୍ତୁଷ୍ଟ ହେଲେ ଏବଂ ବର କନ୍ୟାଙ୍କୁ ବହୁ ଆଡମ୍ବରରେ ଘରକୁ ନେଇ ରଜ୍ୟରୁ ଅଧେଦେଇ ସିଂହାସନରେ ରଜାରଣୀରୂପେ ଅଭିଷିକ୍ତ କଲେ ।

—୦—

ସୂତ ପରୀକ୍ଷିତଙ୍କୁ ଭଗବାନଙ୍କ ବାଣୀ ଶୁଣାଇଲେ

ଭଗବାନ କହିଲେ

ଅତ୍ୟନ୍ତ ପ୍ରିୟ ମୋର ଭକ୍ତ ମୁଁ ଭକ୍ତ ଜନଙ୍କର ହିତ ।
ଭକ୍ତିରେ ମୋତେ ବଶ କରି ନିଜ ସ୍ୱାମୀଙ୍କୁ ଯେହ୍ନେ ସ୍ତ୍ରୀରି
ପ୍ରାଣୀ ଯେ ଦଇବ ଅଧିନ ମାୟାର ବଳେ ହତଜ୍ଞାନ
କୁଟୀରେ ସୀତାଙ୍କୁ ନ ୍ଇ ରମ ନୟନେ ନିଦ୍ରାନାହିଁ
ସ୍ତ୍ରୀ ପୁରୁଷ ସଙ୍ଗ ଏହି କେ ସହେ ନରଦେହ ବହି

ସକଳ ଦୁଃଖ ଏ ଶରୀରେ
ମରଣ ଭୟ ନିରନ୍ତରେ
ଜନ୍ମି ମରଇ ଗଡ୍ର ଦିନେ
ଅଶେଷ ବ୍ୟାଧି ଅନୁକ୍ଷଣେ
ରୋଗ ମନ୍ଦିର ଏ ଶରୀର
ସ୍ୱଭାବେ ଦୁଃଖହି ମାତର
ଯଶ ରହିବ ମହୀତଳେ
ସର୍ବେ ଚଳିବେ କାଳବଳେ ।

## * ବିଶେଷ କଥନ *

ଭଗବାନ କହିଲେ ସ୍ତ୍ରୀ ଯେପରି ନିଜର ସ୍ୱାମୀଙ୍କୁ ସ୍ତ୍ରୀ ସ୍ୱଭାବ ଭକ୍ତି ପ୍ରେମରେ ବଶ କରିପାରେ ମୋର ଭକ୍ତ ସେପରି ଭକ୍ତି ସ୍ୱଭାବ ପ୍ରେମ ଦ୍ୱାରା ମୋତେ ବଶ କରିପାରେ । ପ୍ରତ୍ୟେକ ପ୍ରାଣୀ ଦୈବର ଅଧିନ, ମାୟା ବଳରେ ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ପ୍ରେମ ବଢେ । କିନ୍ତୁ ତାହା ଅସ୍ଥାୟୀ ଓ ବନ୍ଧନ କାରକ ଓ କ୍ଷଣିକ । କିନ୍ତୁ ଭକ୍ତର ପ୍ରେମ ସ୍ଥାୟୀ ଓ ମୋକ୍ଷ ଦାୟକ । ଏ ଶରୀର ରୋଗ ମନ୍ଦିର ଜନ୍ମହେଲେ ନିଶ୍ଚୟ ଦିନେ ମରିବ । ଶରୀର ମରିବ ଆତ୍ମା କଦାପି ମରେ ନାହିଁ । ଯେ ପୁଣ୍ୟ କର୍ମ କରି କିଛି ଯଶ ରଖାଯାଏ ତାହାର ସେହି କୀର୍ତ୍ତିପୂର୍ଣ୍ଣ କର୍ମ ପୃଥିବୀରେ ରହେ । ପର ଜନ୍ମରେ ତାର ପୂର୍ବ ଜନ୍ମର ପୁଣ୍ୟକର୍ମ ଯୋଗୁ ସେ ଉଚ୍ଚ ଓ ଧନୀ ବଂଶରେ ଜନ୍ମ ଗ୍ରହଣ କରି ବହୁ ପୁଣ୍ୟ କାର୍ଯ୍ୟ କରେ ।



## ପୁରରବା ଓ ଉର୍ବଶୀ ଉପଖ୍ୟାନ

ସ୍ତିରୀଙ୍କ ଦେହେ ଯେତେ ଗୁଣ — ଗଜନ ସାବଧାନେ ଶୁଣ ।
ନିର୍ଦ୍ଦୟ କପଟ ବଚନ — ସାହାସ ଆଦି ଗ୍ରରି ଗୁଣ ।
ଅଳପ କ୍ରୋଧେ ପ୍ରାଣନ୍ୟନ୍ତି — ପତି ଭ୍ରାତାଙ୍କୁ ନ ଗଣନ୍ତି ।
ଅଜ୍ଞାନ ଭବେ ଥାନ୍ତି ନିତ୍ୟେ — ବାଞ୍ଛନ୍ତି ସ୍ୱାର୍ଥଭୋଗ ଚିତ୍ତେ ।
ସ୍ୱଭବେ ଆଠ ଗୁଣ କାମୀ — ଇଚ୍ଛନ୍ତୁ ନବ ନବ ସ୍ୱାମୀ ।
ଉର୍ବଶୀ ପୁରରବା ଜାଣ — ପୁରଣେ ପାଇବ ପ୍ରମାଣ ।
କାମୀ ପୁରୁଷଙ୍କର ମନ — କେବେହେଁ ନୋହେ ସଂଯମନ ।
ନିତ୍ୟେ ଇଚ୍ଛନ୍ତି କାମ ଭୋଗ — ଅଗ୍ନି ଯେସନେ ଘୃତ ଯୋଗେ ।

### * ବିଶେଷ କଥନ *

ଏଠାରେ କାମୀ ପୁରୁଷ ଓ କାମୀ ସ୍ତ୍ରୀ ମାନଙ୍କ ବିଷୟ କୁହାଯାଇଛି ସବୁ ପୁରୁଷ ବା ସ୍ତ୍ରୀ ଏପରି ନ ହୋଇପାରନ୍ତି । ସାଧାରଣତଃ ଦେଖା-ଯାଏ ସ୍ତ୍ରୀମାନେ ଅଳ୍ପ କ୍ରୋଧରେ ଆତ୍ମ ହତ୍ୟା କରନ୍ତି ଏବଂ ନିଜର ସ୍ୱାମୀ, ଭ୍ରାତା, ପୁତ୍ର ହତ୍ୟା କରିବାକୁ ମଧ୍ୟ ପଶ୍ଚାତ୍ତି ନାହିଁ । ପୁରୁଷ ମାନଙ୍କ ଅପେକ୍ଷା ସ୍ତ୍ରୀ ମାନଙ୍କର ସାହସ ଗ୍ରରିଗୁଣ ଅଧିକ ଓ କାମ ସ୍ୱଭବ ଆଠ ଗୁଣ । କାମୀ ପୁରୁଷଙ୍କର ଯୌନ କାମନା ବଢ଼ି ବଢ଼ି ଗ୍ଲିଥାଏ ପୁରରବା ଓ ଉର୍ବଶୀ ଏହାର ପ୍ରମାଣ ।



## ଯଜାତିଙ୍କର ଅନୁତାପ ଓ ବୈରାଗ୍ୟ

ଅକାଳେ ବୃଦ୍ଧ ହେବା ଦେଖି  ଯଜାତି ମନେ ହେଲେ ଦୁଃଖୀ ।
ଦେବେ ବାଞ୍ଛନ୍ତି ଯେ ଶରୀର  ନିଷ୍ଫଳ ହୋଇଲା ମୋହର ।
ଇନ୍ଦ୍ରିୟ ନପାରିଲି ଜିଣି  ସ୍ତ୍ରୀ ଭୋଗେ ତୃପ୍ତି କାହିଁ ପୁଣି ।
ପିତାର ମନ ଜାଣିପାରେ  ଉତ୍ତମ ପୁତ୍ର ବୋଲି ତାରେ ।
ଶ୍ରଦ୍ଧାରେ ଆଜ୍ଞା ଯେ ପାଳଇ  ମଧ୍ୟମ ପୁତ୍ର ସେ ବୋଲଇ ।
ଶ୍ରଦ୍ଧା ବିହୀନେ ଆଜ୍ଞାପାଳେ  ଅଧମ ପୁତ୍ର ବୋଲିତାରେ ।
ଉତ୍ତମ ପୁତ୍ରେ ଜରା ଦେଇ  ଯୌବନ ଆଣିଲା ଫେରାଇ ।
କାମ ତୃପତ ଯହୁଁ ହେଲା  ଯୌବନ ପୁତ୍ରେ ଫେରାଇଲା ।
ବୈରାଗ୍ୟହୃଦେ ଜନମିଲା  କୃଷ୍ଣ ସେବାରେ ନିମଜିଲା ।

### * ବିଶେଷ କଥନ *

କାମୀ ପୁରୁଷର (ଯୌନ ଲାଳସା) ବଢ଼ୁଥାଏ, ଆଦୌ କମେ ନାହିଁ । ଯୁବକମାନେ ଏହା ବୁଝିନପାରି କାମାନ୍ଧ ହେବାରୁ ଦିନ ରାତି ଅତି ସ୍ତ୍ରୀ ସମ୍ଭୋଗ କରିବାରୁ ଯୁବା ବୟସରେ ବୁଢ଼ା ପରି ଦିଶନ୍ତି ଯଜାତି ଅତିବେଶି ସ୍ତ୍ରୀ ସମ୍ଭୋଗ କରିବାରୁ ଯୁବା ବୟସରେ ଜରାଜୀର୍ଣ୍ଣ ହୋଇ ଅନୁତାପ କଲେ । ଶେଷରେ ଉତ୍ତମ ପୁତ୍ରକୁ ଜରା-ଦେଇ ତା ଠାରୁ ଯୌବନ ଆଣି ସ୍ତ୍ରୀ ସମ୍ଭୋଗ କରି ତୃପ୍ତି ହେଲେ ।

ତୃପ୍ତି ହେବା ପରେ ପୁତ୍ରକୁ ଯୌବନ ଫେରାଇ ଦେଲେ ଜରାବସ୍ଥାକୁ ପୁତ୍ରଠାରୁ ଫେରାଇ ଆଣିଲେ । ତାପରେ ଯୌନ କାମନାର ଭୟଙ୍କର ପରିଣତି ଅନୁଭବକରି ଅନୁତାପକଲେ, ତେଣୁ ତାଙ୍କ ମନରେ ବୈରାଗ୍ୟ ଜାତ ହେଲା । ସେ ସଂସାରର ସମସ୍ତ ମାୟା ତ୍ୟାଗ କରି କୃଷ୍ଣ ସେବା ଭଜନରେ ଶେଷ ଜୀବନ କଟାଇଥିଲେ ।



— ପରୀକ୍ଷିତଙ୍କ ଆକୁଳ ପ୍ରାର୍ଥନା —

ବ୍ରହ୍ମାଣ୍ଡ ମାଳ ମାଳ ହୋଇ  ତୋ ଲୋମ କୂପେ ଛନ୍ତି ରହି ।
ଦୁଷ୍ଟ ନିବାରି ସନ୍ଥପାଳୁ  ତୁ ନାଥ ପରମ ଦୟାଳୁ ।
ବାଳକ ବୃଦ୍ଧ ଯେ ତରୁଣ  ଅବଶ୍ୟ ହୋଇବ ମରଣ ।
ଦେହ ଜନ୍ମିଲେ ନିଶ୍ଚେ ମରି  ମରଣ ଗ୍ରୁହରେ କିମ୍ପା ଡ଼ରି ।
ସତ୍ୟେତୁ ପାଳୁ ବସୁନ୍ଧରା  ତୋର ଭିଆଣ ନରହରି ।
ସତ୍ୟେ ବ୍ରହ୍ମାଙ୍କୁ କଲୁ ଜାତ  ସତ୍ୟ ସ୍ୱରୂପ ତୁ ଅଚ୍ୟୁତ ।
ଦୁର୍ଲଭ ମନୁଷ୍ୟ ଶରୀର  ବିଷ୍ଣୁର ପୂଜାର ମନ୍ଦିର ।
ହେ ପ୍ରଭୁ ହୁଅତୁ ସଦୟ  ମୋ ମନେ ଦିଅ ତୁ ଅଭୟ ।
ତୋ ପାଦେ ରହୁ ମୋର ମନ  ତୋ ନାମ ଭଜି ଯାଉ ପ୍ରାଣ ।

* ବିଶେଷ କଥନ *

ଋଷି ମାନଙ୍କର ଉପଦେଶ ଓ ଭଗବତ୍ ବାଣି ଶୁଣିବା ପରେ ପରୀକ୍ଷିତଙ୍କର ମନରେ ଥିବା ମୃତ୍ୟୁ ଭୟ ଦୂର ହେଲା, ସେ ଭଗବାନଙ୍କୁ ପ୍ରାର୍ଥନା କରି ଜଣାଇଲେ ଯେ ଜନ୍ମହେଲେ ନିଶ୍ଚୟ ଦିନେନା ଦିନେ ମୃତ୍ୟୁ ହେବ । ବାଳକ ବୃଦ୍ଧ, ତରୁଣ ସମସ୍ତେ ମରିବେ । ମନୁଷ୍ୟ ଶରୀର ବିଷ୍ଣୁଙ୍କର ପୂଜା ମନ୍ଦିର ବୋଲି ଯେଉଁମାନେ ଭାବନ୍ତି ସେହି-ମାନେ ଭଗବାନଙ୍କର କରୁଣା ଲଭ କରନ୍ତି । ହେ ପ୍ରଭୋ ମୋର ମନରେ ଅଭୟ ଦିଅ ଯେପରି ମୁଁ ମୃତ୍ୟୁକୁ ନଡରି ତୋର ନାମ ସ୍ମରଣ କରୁ କରୁ ମୋର ପ୍ରାଣ ତୋ ନିକଟକୁ ଚାଲିଯାଉ ।

ଇତି । ଓଁ ନମୋ ଭଗବତେ ବାସୁଦେବାୟ

ନବମ ସ୍କନ୍ଧ ସମାପ୍ତ ।



# ଦଶମ ସ୍କନ୍ଧ

( ଗୋପ ଲୀଳା )

## କୃଷ୍ଣ ଜନ୍ମ

ଓଁ ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍
ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

— କୃଷ୍ଣ ଜନ୍ମ ପରେ ବସୁଦେବଙ୍କ ଗୋପ ଗମନ —

ହେ ଦେହିଁ ତୁହି ରକ୍ଷାକର          ମୁଁ ଛାର ମନୁଷ୍ୟ ମାତର ।
ତୁ ଏବେ ହରି ରଖ ମୋତେ          କଂସକୁ ନଯାଇ ପରତେ ।
ଚିନ୍ତିବା ଦେଖି ଜଗନ୍ନାଥ          ଫଣାରେ ଢାଙ୍କିଲେ ଅନନ୍ତ ।
ଶୁଣି ବୋଇଲେ ଉଗ୍ରସେନ          ଦେଖାଅ ଶଙ୍ଖ ଚକ୍ର ଚିହ୍ନ ।
ଭୃତ୍ୟକୁ ଦୟା ଭାବ ବହି          ଶଙ୍ଖ ଚକ୍ର ଚିହ୍ନ ଦେଖାଇ ।
ସ୍ତୁତି କରିଣ ଉଗ୍ରସେନ          ଚରଣେ କଲେକି ପ୍ରଣାମ ।
ଶ୍ରୀ ମୁଖେ ତାକୁ ଆଜ୍ଞା ଦେଲେ          ନୃପତି ହୋଇବୁ ବୋଇଲେ ।

## * ବିଶେଷ କଥନ *

କାରାଗାରର ଅନ୍ଧକାର ମଧ୍ୟରେ ରାତିରେ ଦେବକୀ ଗର୍ଭରୁ ଅଷ୍ଟମୀ ତିଥିରେ ଶ୍ରୀକୃଷ୍ଣ ଜନ୍ମଗ୍ରହଣ କରିଥିଲେ । ଶ୍ରୀକୃଷ୍ଣଙ୍କ ମାୟାରୁ କାରାଗାର ଦୃଷ୍ଟି ଆଲୋକିତ ହେଲା ଏବଂ ସବୁ ଦରଜା ଖୋଲିଗଲା । ବସୁଦେବ ଦେବକୀ ସ୍ୱୟଂ ଭଗବାନଙ୍କୁ ସ୍ୱ ଚକ୍ଷୁରେ ଦେଖିଲେ । କଂସ ଭୟରେ ବସୁଦେବ ଶ୍ରୀକୃଷ୍ଣଙ୍କୁ ନେଇ ନନ୍ଦରାଜା ଉଆସରେ ଗୋପନରେ ରଖିବା ପାଇଁ ଯିବାବେଳେ ଦ୍ୱାରେ ଉଗ୍ରସେନ ହାବୁଡରେ ପଡ଼ିଗଲେ ଏବଂ କହିଲେ ମୁଁ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କୁ ନେଇ ନନ୍ଦରାଜାଙ୍କ ଘରେ ଲୁଚାଇ ରଖିବାକୁ ଯାଉଛି । କଂସ ଜାଣିଲେ କୃଷ୍ଣଙ୍କୁ ମାରିଦେବ । ତୁମେ ଶୀଘ୍ର ବାଟ ଛାଡ଼ି ଦିଅ । ଏହା ଶୁଣି ଉଗ୍ରସେନ କହିଲେ । କୃଷ୍ଣ ରୂପରେ ଶଙ୍ଖ, ଚକ୍ର, ଚିହ୍ନ ଦେଖାଇଲେ ଛାଡ଼ି ଦେବ ।

ଭଗବାନ ଶ୍ରୀକୃଷ୍ଣ ଭକ୍ତ ଉଗ୍ରସେନଙ୍କ ମନକଥା ଜାଣିପାରି ତାଙ୍କୁ ନିଜ ରୂପ ଦେଖାଇଲେ । ଉଗ୍ରସେନ ସ୍ୱୟଂ ଭଗବାନଙ୍କୁ ସ୍ୱ ଚକ୍ଷୁରେ ଦେଖି ଭକ୍ତିରେ ଗଦ ଗଦ ହୋଇ ପ୍ରଣାମ କରିବାରୁ ଭଗବାନ ଶ୍ରୀକୃଷ୍ଣ ତାଙ୍କୁ ବର ଦେଇ କହିଲେ ତୁ ମଥୁରାରେ ରାଜା ହେବୁ । ଏହାପରେ ବସୁଦେବ ଶ୍ରୀକୃଷ୍ଣଙ୍କୁ ନେଇ ଯଶୋଦାଙ୍କ ପାଖରେ ଥୋଇ ଦେଇ ଯଶୋଦା ଜନ୍ମ ଦେଇଥିବା ମହାମାୟା କନ୍ୟାଙ୍କୁ ଆଣି ଦେବକୀଙ୍କ

ପାଖରେ ରହିଥିଲେ । ଦେବକୀ ଓ ଯଶୋଦା ପ୍ରସବ ବେଦନା ମୋହ୍ନ ପ୍ରସୂତି ଶଯ୍ୟାରେ ଅଚେତ ଅବସ୍ଥାରେ ଥିବାରୁ କିଛି ଜାଣି ପାରିଲେ ନାହିଁ ।

—*—

## ନନ୍ଦୋତ୍ସବ

ଖେମଟା ବାଦ୍ୟ କରତାଳ ନାଚନ୍ତି ଆନନ୍ଦେ ଗୁଆଳ ।
ଅପୁଆ ଘରେ ପୁଅ ଜନ୍ମ ନାଚେ ଆନନ୍ଦେ ନନ୍ଦରାଣ ।

### * ବିଶେଷ କଥନ *

କିଛି ସମୟ ପରେ ଚେତା ହେବାରୁ ଯଶୋଦା ପୁଅ ଜନ୍ମ କରିଛନ୍ତି ବୋଲି ଜାଣିପାରି ଆନନ୍ଦରେ ବିହ୍ୱଳ ହୋଇଗଲେ । ରାଜ୍ୟ ସାରା ନାନା ପ୍ରକାର ବାଦ୍ୟ ବଜାଇ ଗୋପାଳମାନେ ନାଚରେ ମାତିଲେ । ଗୋପୀମାନେ କରତାଳ ହୁଳହୁଳି ଦେଇ ଆନନ୍ଦରେ ନୃତ୍ୟ କଲେ । ନନ୍ଦରାଜା ବୃଦ୍ଧାବସ୍ଥାରେ ପୁଅଟିଏ ପାଇଥିବାରୁ ଆନନ୍ଦରେ ନାଚି ନାଚି ପାଗଳ ପରି ହେଲେ ।

—*—

## ଦେବକୀଙ୍କ ଶୋକ

ଆଉ କଅଁସ ମୋର କାହିଁ ପାରିବ ପୁତ୍ର ଉପୁଜାଇ ।
ଦେହ ବହିଲେ ନଷ୍ଟେ ମରି ସଂସାର ନୁହଇ କାହାରି ।
ଅର୍ଜିଲା କର୍ମେ ଆତଜାତ ମାୟା ଭିଆଣ ତାତ ମାତ ।
ସମ୍ବନ୍ଧ ଶୂନ୍ୟ ପ୍ରାୟ ଦୃଶ୍ୟ ଏଥେ ତୁ ନ କର ବିଶ୍ୱାସ ।
ନିରତେ ଚିନ୍ତ ନରହରି ନ ମରି ଶୂନ୍ୟ କଳା କରି ।

* ବିଶେଷ କଥନ *

ଦେବକୀ ଚେତାପାଇ ଯେତେବେଳେ ଦେଖିଲେ କନ୍ୟାଟିଏ ଜନ୍ମ-ନେଇଛନ୍ତି ସେତେବେଳେ ଦୁଃଖରେ କାନ୍ଦି ପକାଇ କହିଲେ ମୋର ଭାଗ୍ୟରେ ପୁଅନାହିଁ । ପୁଅଟିଏ ହୋଇଥିଲେ କଂସକୁ ବିନୟ ହୋଇ ତାକୁ ନ ମାରିବା ପାଇଁ କହିଥାନ୍ତି । ପୂର୍ବ ଜନ୍ମରେ ଯେପରି କର୍ମ କରିଥିଲି ସେପରି ଫଳ ପାଇଲି । କର୍ମ ଅନୁସାରେ ଫଳ ମିଳେ । ସବୁ ସେଇ ଭଗବାନଙ୍କର ମାୟା । କେହି କାହାର ପୁଅ ନୁହେଁ କି କେହି କାହାର ପିତାମାତା ନୁହନ୍ତି । ବୃଥା ଚିନ୍ତା, ବୃଥା କଳି କରି ପର ଦୋଷ ଦେବା ଉଚିତ ନୁହେଁ । ସର୍ବଦା ଭଗବାନଙ୍କୁ ଚିନ୍ତା କରିବା ଉଚିତ, ସେ ହିଁ ଏକମାତ୍ର ଆଶ୍ରୟ ।

## ପୂତନା ବଧ

ଯଶୋଦା ଘେନି ବନମାଳୀ ପୂତନା କୋଳେ ଦେଲେ ତୋଳି ।
କୃଷ୍ଣଙ୍କ ମୁଖେ ଦେଲା ସ୍ତନ ଗାଢେ ପିଇଲେ ଭଗବାନ ।

ଅସୁରୀ ପ୍ରାଣ କ୍ଷୀର ସଙ୍ଗେ    ପଶିଲା ଗୋବନ୍ଦର ଅଙ୍ଗେ ।
ଯାହା ବେଲଲନ୍ତି ଋଷି ଜନେ    ଅନ୍ୟଥା ନୁହଇ ବଚନେ ।
ଶକଟା ତୃଣାବର୍ତ୍ତ ମଲେ    ପୂର୍ବ ଅଭିଶାପୁ ତରିଲେ ।

—*—

* ବିଶେଷ କଥନ *

ପୁତନା ଅସୁରୀ କଂସର ଆଦେଶରେ କୃଷ୍ଣଙ୍କୁ କ୍ଷୀର ଖୁଆଇବା ଛଳନା କରି ତାଙ୍କୁ ହତ୍ୟା କରିବା ପାଇଁ ସ୍ତନରେ ବିଷ ପୁରାଇ ଆସି ଯଶୋଦା ପାର୍ଶ୍ୱରେ ପହଞ୍ଚିଲା । ଯଶୋଦା ବୁଦ୍ଧିନପାଇ ଭାବିଲା ଯଦି ଜଣେ ଯୁବତୀ ନିଜ ଇଚ୍ଛାରେ କ୍ଷୀର ଖୁଆଇବା ପାଇଁ କହୁଛି କୃଷ୍ଣ କ୍ଷୀର ପିଇଲେ ଶୀଘ୍ର ତାଗଡ଼ା ହୋଇଯିବ ଭାବି ପୁତନା କୋଳରେ କୃଷ୍ଣଙ୍କୁ ବସାଇଦେଲା । କୃଷ୍ଣ କ୍ଷୀର ପିଇବା ସଙ୍ଗେ ପୁତନାର ପ୍ରାଣ ମଧ୍ୟ ଶୋଷି ନେଲେ । ପୁତନା ମଲା, କୃଷ୍ଣଙ୍କ ପାଦରେ ଲୀନ ହେଲା । ତୃଣାବର୍ତ୍ତ, ଶକଟାସୁର ପ୍ରଭୃତି ବହୁ ଅସୁର କୃଷ୍ଣଙ୍କ ଦ୍ୱାରା ନିହତ ହେଲେ ଏବଂ ପୂର୍ବ ଅଭିଶାପରୁ ମୁକ୍ତ ହେଲେ ।

—**—

ଯଶୋଦାଙ୍କ ବିଶ୍ୱ ଦର୍ଶନ

ଯାହାର ଆଦି ଅନ୍ତ ନାହିଁ    ଯଶୋଦା ପାଇବ ତା କାହିଁ ।
ମାଟି ଖାଇବା ଦେଖି ହରି    କୃଷ୍ଣ ମାୟା ଜାଣି ନ ପାରି ।

ତତକ୍ଷଣେ କୃଷ୍ଣ ପାଟି ଧରି ଦେଖେ ଗୃହେଁ ଲୁ ନନ୍ଦ ନାରୀ ।
ଦେଖିଲା ଅଶେଷ ବ୍ରହ୍ମାଣ୍ଡ ସ୍ୱପନ ପ୍ରାପ୍ୟେ ଭ୍ରମେ ମୁଣ୍ଡ ।
ଯଶୋଦା ଶ୍ରମ ଦେଖି ହରି ନିଜ ବନ୍ଧନେ ଦୟାକଲ ।
ତତକ୍ଷଣେ ଦଉଡ଼ି ଅଣ୍ଟିଲା କୃଷ୍ଣଙ୍କୁ ରେଲରେ ବାନ୍ଧିଲା ।

* ବିଶେଷ କଥନ *

ଏ ସଂସାରରେ ଯାହା କିଛି ଘଟେ, ଘଟୁଛି ବା ଘଟିବ ସେ ସମସ୍ତ ଭଗବାନଙ୍କର ମାୟାର ଖେଳ । ମାଆକୁ ବିଶ୍ୱ ବ୍ରହ୍ମାଣ୍ଡ ଦେଖାଇବା ଉଦ୍ଦେଶ୍ୟରେ କୃଷ୍ଣ ମାଟି ଖାଇଲେ । ଯଶୋଦା ଏହା ଦେଖି ଶୀଘ୍ର ଦଉଡ଼ି ଆସି କୃଷ୍ଣର ପାଟି ଖୋଲି ଭିତରକୁ ଚାହିଁ ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ଦେଖି ଆଶ୍ଚର୍ଯ୍ୟ ହେଲେ । ତାଙ୍କୁ ସବୁ ସ୍ୱପ୍ନ ଦେଖିଲା ଭଳି ଲାଗିଲା ।

ଆଉଥରେ କୃଷ୍ଣଙ୍କର ଦୁଷ୍ଟାମି ଭାଙ୍ଗିବା ପାଇଁ କୃଷ୍ଣଙ୍କୁ ଦଉଡ଼ିରେ ବାନ୍ଧିବା ପାଇଁ ଚେଷ୍ଟାକଲେ । ଘରୁ ଯେତେ ଦଉଡ଼ି ଆଣି ବାନ୍ଧିଲେ ବି ଦଉଡ଼ି ଅଣ୍ଟୁ ନଥାଏ । ମାଆର ବ୍ୟସ୍ତତା ଦେଖି କୃଷ୍ଣ ଏପରି ମାୟା କଲେ ଦଉଡ଼ି ଅଣ୍ଟିଲା, ଯଶୋଦା କୃଷ୍ଣଙ୍କୁ ଗୋଟିଏ ଖୁଣ୍ଟରେ ବାନ୍ଧି ପାରିଲେ । କୃଷ୍ଣଙ୍କୁ ଦଉଡ଼ିରେ ବାନ୍ଧିବା ପୂର୍ବ ଜନ୍ମର ବହୁ ପୁଣ୍ୟର ଫଳ ।

—*—

## କାଳୀୟ ଦଳନ

କାଳୀୟ ମନେ ବିଚାରିଲା　　ମରଣ ନିଶ୍ଚୟ ହୋଇଲା ।
ହରିରେ ପଶିଲା ଶରଣ　　ତାକୁ ରଖିଲେ ନାରାୟଣ ।
ପୂର୍ବେ ଯାହାର ପୁଣ୍ୟ ଥାଇ　　ସକଳ ଦୁଃଖୁ ସେ ତରଇ ।
ହରି ଚରଣେ ଦିଅ ମନ　　ସେ ହରି ବିପଦ ଭଞ୍ଜନ ।

## * ବିଶେଷ କଥନ *

ପ୍ରାଣୀ ତାର ପୂର୍ବ ଜନ୍ମର କର୍ମଫଳ ଏ ଜନ୍ମରେ ଭୋଗ କରେ । କିନ୍ତୁ ମାୟାବଦ୍ଧ ପ୍ରାଣୀ ତାହା ବୁଝି ନପାରି ଅଯଥା ଅନ୍ୟ ଉପରେ ଦୋଷାରୋପ କରେ, ଯେଉଁମାନେ ଉଚ୍ଚ ବଂଶରେ ଓ ଧର୍ମୀ ପୁଣ୍ୟାତ୍ମାଙ୍କ ଘରେ ଜନ୍ମ ଗ୍ରହଣ କରୁଛନ୍ତି ତାହା ସେମାନଙ୍କ ପୂର୍ବ ଜନ୍ମର ପୁଣ୍ୟ କର୍ମର ଫଳ ଯେଉଁମାନେ ନୀଚ କୁଳରେ, ଗରିବ ଘରେ ଜନ୍ମଗ୍ରହଣ କରୁଛନ୍ତି ତାହା ସେମାନଙ୍କର ପୂର୍ବ ଜନ୍ମର ପାପକର୍ମର ଫଳ ତେବେ ଏ ଜନ୍ମରେ ପୂର୍ବ ଜନ୍ମରେ ପାପକର୍ମ ଥାଉ ବା ପୁଣ୍ୟ କରିଥାଉ ଯଦି ବିପଦ ବେଳେ ଭଗବାନଙ୍କ ଉପରେ ଦୃଢ଼ ବିଶ୍ୱାସ ରଖି ସତ୍କର୍ମ କରେ ସେ ନିଶ୍ଚିତରୂପେ ବିପଦରୁ ରକ୍ଷା ପାଏ ।

## ସନ୍ଥ ପରୀକ୍ଷିତଙ୍କୁ ବୁଝାଇଲେ

ପର ରମଣୀ ଯେହୁ ହରେ　　ଯେ ପ୍ରାଣୀ ମଦ୍ୟପାନ କରେ ।
ଜୁଆ ଖେଳନ୍ତି ଭେଳ ହୋଇ　　ଦ୍ୱେଷ କରଇ ଲୋଭ ବନ୍ଧୁ ।

ଏକ ଆରକେ ହିଂସା ବନ୍ଧି — ନରକେ ପଡୁଥାନ୍ତି ଯାଇଁ ।
ସମ୍ପଦ ମଦେ ଯେହୁ ଅନ୍ଧ — ସମ୍ପଦ ନାଶ ତା ଔଷଧ ।
ଦୁଃଖୀର ଦୁଃଖ ବୁଝେ ଦୁଃଖୀ — ବୁଝି ନ ପାରେ ତାହା ସୁଖୀ ।
କଣ୍ଟା ନ ବନ୍ଧେ ଯା ଚରଣ — ସେ କି ଜାଣଇ ତା କଷଣ ।
ଯେ ଥାଏ ସମେ ସୁଖେ ଦୁଃଖେ — ତାହାକୁ ନାରାୟଣ ରଖେ ।

* ବିଶେଷ କଥନ *

ମନୁଷ୍ୟ ଯେଉଁ ମୁହୂର୍ତ୍ତରେ ଅନ୍ୟାୟ କାମ କରୁଥାଏ, ସେତେବେଳେ ତା କପାଳରେ ଦଣ୍ଡ ସଞ୍ଚିତ ହୋଇ ରହୁଥାଏ, କିନ୍ତୁ ସେ ତାହା ବୁଝିପାରେ ନାହିଁ । ଧନ ଗର୍ବରେ ଅନ୍ଧ ହୋଇଥିବା ଲୋକକୁ ଧନରୋଗୀ କୁହାଯାଏ । ଏପରି ରୋଗର ଏକମାତ୍ର ଔଷଧ ଧନ ନାଶ । ଧନୀ ଗରିବର ଦୁଃଖ ବୁଝିପାରେ ନାହିଁ । ଯାହାର ପାଦରେ କଣ୍ଟା ଫୋଡ଼ି ହୋଇନାହିଁ । କଣ୍ଟା ଫୋଡ଼ି ହୋଇଥିବା ପାଦର କଷ୍ଟ ସେ କିପରି ଜାଣିବ ? ଯେ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖେ ନାରାୟଣ ସର୍ବଦା ତାର ସହାୟ ହୁଅନ୍ତି ।



ମନ ତୋ ପାଦେ ନତ୍ୟେ ଥାଉ — ତୋ ନାମ ଭଜି ଜୀବ ଯାଉ ।
ଯାହାକୁ ହେଉ ତୁ ସଦୟ — ସେ ନ ପଡ଼େ ମାୟା ମୋହେ ।

ମାୟା ମନୁଷ୍ୟ ଅବତାର ଗୁପତେ ରହି ନନ୍ଦ ଘର ।
ଦୁଷ୍ଟ ନିବାରି ସନ୍ଥ ପାଳି ଦୟାସାଗର ବନମାଳୀ ।

* ବିଶେଷ କଥନ *

ଭଗବାନ ମନୁଷ୍ୟ ରୂପରେ ଜନ୍ମଗ୍ରହଣ କରି ଯୁଗେ ଯୁଗେ ଦୁଷ୍ଟମାନଙ୍କୁ ସଂହାର କରନ୍ତି ଓ ସନ୍ଥମାନଙ୍କୁ ପାଳନ କରି ଦେଶରେ ଶାନ୍ତି ସ୍ଥାପନ କରନ୍ତି । ଭଗବାନଙ୍କର ଦୟା ଦୁଷ୍ଟ ଓ ସନ୍ଥମାନଙ୍କ ପ୍ରତି ସମାନ । ଦୁଷ୍ଟମାନଙ୍କୁ ସଂହାର କରିବା ସେମାନଙ୍କ ପ୍ରତି ଭଗବାନଙ୍କର ଦୟା । ସଂହାର ନ କଲେ ସେମାନଙ୍କର ସଦ୍‌ବୁଦ୍ଧି ହେବନାହିଁ । ସେଥିପାଇଁ ଭଗବାନଙ୍କ ନାମ ଦୟାସାଗର ।

— —

ଶୁକ ପଣ୍ଡିତ କହିଲେ

ବହୁ ପ୍ରକାରେ ସେବା କରି ବୃକ୍ଷ ଯେ ପର ଉପକାରୀ ।
ଏହାଙ୍କ ପ୍ରାୟ ଯେବେ ହୋଇ ସଂସାର ମଧ୍ୟେ ଦେହ ବହି ।
ଧନେ ବଚନେ ସେବା କରି ଯେ ହୁଏ ପର ଉପକାରୀ ।
ଦିନ ବଞ୍ଚଇ ସୁଖେ ଦୁଃଖେ ତାହାକୁ ଜଗନ୍ନାଥ ରଖେ ।

* ବିଶେଷ କଥନ *

ପ୍ରତ୍ୟେକ ମନୁଷ୍ୟ ବୃକ୍ଷପରି ପରୋପକାରୀ ହେବା ଉଚିତ୍ । ଗଛ ଛାୟା ପ୍ରଦାନ କରେ । ସେ ତ୍ୟାଗ କରୁଥିବା ଅମ୍ଳଜାନ ବାଷ୍ପଦ୍ୱାରା

ପ୍ରାଣୀମାନେ ବଞ୍ଚି ରହନ୍ତୁ, ତାର ପତ୍ର, ପୁଷ୍ପ, ଫଳ, କାଠ ଇତ୍ୟାଦି ବ୍ୟବହାର କରି ମନୁଷ୍ୟ ସୁଖମୟ ଜୀବନ ଯାପନ କରେ । ନିଜର ଜୀବନ ଦେଇ ବୃକ୍ଷ ପରର ଉପକାର କରେ । ଯେଉଁ ଲୋକ ଧନ, ବଚନ, ସେବାଦ୍ୱାରା ପରର ଉପକାର କରନ୍ତି । ସେମାନଙ୍କୁ ଜଗନ୍ନାଥ ସବୁବେଳେ ସହାୟ ହୁଅନ୍ତି ।

### ଭଗବାନ କହିଲେ

ମୋହର ଆଦି ଅନ୍ତ ନାହି     ପ୍ରାଣୀ ପାଇବେ ମୋତେ କାହିଁ ।
ଦୂରେ ଥାଇ ଯେ ହୃଦେ ଚିନ୍ତି     ସେ ମୋତେ ନିକଟେ ଦେଖନ୍ତି ।
କର୍ମର ବଳେ ଦେହ ଘେନି     ଜୀବ ଜନ୍ମଇ ନାନା ଯୋନି ।
କର୍ମଟି ଶତ୍ରୁ ମିତ୍ର ହୁଏ     ଗୁରୁଙ୍କ ପ୍ରାୟେ ଶିକ୍ଷା ଦିଏ ।

### * ବିଶେଷ କଥନ *

ଭଗବାନ ସବୁଠାରେ ଥିଲେ ମଧ୍ୟ ତାଙ୍କୁ କେହି ଦେଖିପାରନ୍ତି ନାହିଁ କିନ୍ତୁ ଯେ ତାଙ୍କୁ ଭକ୍ତିର ସହିତ ମନ ମଧ୍ୟରେ ଚିନ୍ତା କରେ ସେ ଯେତେ ଦୂରରେ ରହି ସ୍ମରଣ କରିଥିଲେ ମଧ୍ୟ ନିକଟରେ ଦେଖିପାରେ । ନିଜର କର୍ମହିଁ ନିଜର ଗୁରୁ ପରି ଶିକ୍ଷା ଦିଏ ସତ୍‌କର୍ମ ନିଜର ମିତ୍ର ପରି ଅସତ୍‌କର୍ମ ତୁମ୍ଭର ଶତ୍ରୁ ପରି କାର୍ଯ୍ୟ କରନ୍ତି ।



## ଶ୍ରୀକୃଷ୍ଣଙ୍କର ଗୋପୀଙ୍କୁ ଉପଦେଶ

ପୂର୍ବ ଅର୍ଜିତ କର୍ମଫଳେ    ଯେ ଯାହା ସ୍ୱାମୀ ତାକୁ ମିଳେ ।
ଯେ ଯେବେ ହୁଏ ଅସୁନ୍ଦର    ଦୁଃଖୀ ମୂରୁଖ ବ୍ୟାଧିକର ।
ତାହାଙ୍କୁ ନମଣିବ ହୀନ    ସେ ବିଷ୍ଣୁ ଦେବଙ୍କ ସମାନ ।
ମନ ନିବେଶି କୃଷ୍ଣ ପାଦେ    କାନ୍ଦନ୍ତି ଗୋପୀ ଗଦଗଦେ ।
ଛୁଡ଼ିଲୁ ପତି ସୁତ ଘର    ତୋହର ପାଇଁ ଦାମୋଦର ।
ଭଜନ୍ତି ଯେ ତୋହର ନାମ    ତାହାକୁ ନ ଦଣ୍ଡଇ ଯମ ।
ସେ ଗୋପୀ ଗୋବିନ୍ଦର ପ୍ରାୟେ    ଜ୍ଞାନୀ, ସୁଜନେ କର ଲୟେ ।

* ବିଶେଷ କଥନ *

କୃଷ୍ଣପ୍ରେମରେ ପାଗଳ ହୋଇ ଯେତେବେଳେ ଗୋପୀମାନେ ସ୍ୱାମୀ, ପୁତ୍ର, ଧନ ସମ୍ପତ୍ତି, ଗୃହ ସମସ୍ତ ତ୍ୟାଗକରି ଶ୍ରୀକୃଷ୍ଣଙ୍କ ନିକଟରେ ପହଞ୍ଚିଲେ । ସେତେବେଳେ ଶ୍ରୀକୃଷ୍ଣ ସେମାନଙ୍କୁ ଉପଦେଶ ଦେଲେ ଯେ ସ୍ୱାମୀ ସ୍ତ୍ରୀ ମାନଙ୍କର ଦେବତା । ସ୍ୱାମୀ ଦୁଃଖୀ ହେଉ, ମୁର୍ଖ ହେଉ ବା ବ୍ୟାଧିଗ୍ରସ୍ତ ହେଉ ସ୍ତ୍ରୀ ତାକୁ ଦେବତା ମନେ କରି ତାର ସେବା କରିବା ଉଚିତ । କାରଣ ପୂର୍ବ ଜନ୍ମର କର୍ମ ସ୍ୱରୂପ ସ୍ତ୍ରୀକୁ ସ୍ୱାମୀ ମିଳିଥାଏ । ତେଣୁ ତାକୁ ସାଧାରଣ ମନୁଷ୍ୟ ନଭାବି ଯେଉଁ ସ୍ତ୍ରୀ ସ୍ୱାମୀ ସେବା କରେ ସେ ତାର ପୂର୍ବ ଜନ୍ମର କର୍ମ ଦୋଷରୁ ମୁକ୍ତ ହୋଇ ପର ଜନ୍ମରେ ଦିବ୍ୟ ସ୍ୱାମୀ ପାଇଥାଏ । ଏହା ଭଗବାନଙ୍କର ଆଶୀର୍ବାଦ ବୋଲି ପ୍ରତ୍ୟେକ ସ୍ତ୍ରୀ ଭାବିବା ଉଚିତ ।

—o—

## ଭଗବାନଙ୍କର ମାୟା

ଢାଇବେ କଂସ ଅବିରତେ କୃଷ୍ଣଙ୍କୁ ଭୟ କରି ଚିତ୍ତେ ।
ଯାହାକୁ ଡରୁଥିଲା ନିତ୍ୟେ ତାହାକୁ ଦେଖିଲା ଅଗ୍ରତେ ।
ତା ଦେହେ ପଶି କଂସ ରାୟ ଖଣ୍ଡିଲା ଜନ୍ମ ମୃତ୍ୟୁ ଭୟ ।
ମଞ୍ଚାରୁ ପଡ଼ି ମାମୁଁ ମଲା ମୋତେ ତ ଦଇବ ରଖିଲା ।
ବନ୍ଦିଲା ମାଈଙ୍କ ଚରଣ ଆଶ୍ୱାସନା କଲା ତାଙ୍କ ମନ ।

### * ବିଶେଷ କଥନ *

ଭଗବାନଙ୍କୁ କେହି କେହି ଶତ୍ରୁ ବା ମିତ୍ର ବୋଲି ଭାବନ୍ତି । ଭଗବାନଙ୍କୁ ଯେ ଯେପରି ଭାବେ ସେ ସେହିପରି ଫଳ ପାଏ । କଂସ ଭଗବାନଙ୍କୁ ଶତ୍ରୁ ବୋଲି ଭାବେ । କିନ୍ତୁ ଭଗବାନ କାହାରି ଶତ୍ରୁ ନୁହଁନ୍ତି କିମ୍ବା ମିତ୍ର ନୁହଁନ୍ତି । କିନ୍ତୁ ସେ ଯାହା କରନ୍ତି ତାହା ଶତ୍ରୁ ଓ ମିତ୍ର ଉଭୟଙ୍କର ସମାନ ମଙ୍ଗଳ ହୁଏ । ତାଙ୍କ ସୃଷ୍ଟିରେ ଅମଙ୍ଗଳ ବୋଲି କିଛି ନାହିଁ । କଂସ ଯେଉଁ କୃଷ୍ଣଙ୍କୁ ଡ଼ରୁଥିଲା ସେହି କୃଷ୍ଣ ଅର୍ଥାତ୍ ଭଗବାନଙ୍କୁ ଆଖିରେ ଦେଖି ପ୍ରାଣ ତ୍ୟାଗ କଲା । ମଞ୍ଚାରୁ ପଡ଼ି କଂସ ମରିବାଟା ଲୋକ ଦେଖାଣିଆ ଦୃଶ୍ୟ । କୃଷ୍ଣଙ୍କର ମାୟାରେ ମଞ୍ଚା ଭାଙ୍ଗିଗଲା । କଂସ ଆପେ ଆପେ ମରିଗଲା । କୃଷ୍ଣ ତାଙ୍କୁ ମାରି ନାହାନ୍ତି ବୋଲି ଲୋକେ ଜାଣିଲେ । କୃଷ୍ଣ କଂସର ରାଣୀମାନଙ୍କୁ ସାନ୍ତ୍ୱନା ଦେଇ କହିଲେ, ମଞ୍ଚା ଭାଙ୍ଗି ଯିବାରୁ ମାମୁଁ ପଡ଼ି ମରିଗଲେ, କିନ୍ତୁ

ମୋତେ ଦଇବ ରକ୍ଷା କରିଦେଲା ନଚେତ୍ ମୁଁ ବି ମରିଯାଇଥାନ୍ତି । ମାଈଁମାନେ ମଧ୍ୟ ଏହା ସତ୍ୟ ବୋଲି ବୁଝିଗଲେ । କୃଷ୍ଣଙ୍କର ମାୟା ଦେବତା ମାନେ ବି ବୁଝି ପାରନ୍ତି ନାହିଁ । ମନୁଷ୍ୟ କିପରି ବୁଝିବ ? କଂସ ପୂର୍ବ ଜନ୍ମର ଅଭିଶାପରୁ ମୁକ୍ତ ହେଲା ଏବଂ ଶ୍ରୀକୃଷ୍ଣଙ୍କ ପାଦରେ ଲୀନହେଲା । ଭଗବାନ ବିଷ୍ଣୁଙ୍କର ଦ୍ୱାରପାଳରୂପେ ଥିବା ଜୟ, ବିଜୟ ଦୁଇ ଭଇଙ୍କୁ ଋଷି ମାନଙ୍କ ଅଭିଶାପରୁ ମୁକ୍ତ କରିବା ପାଇଁ ଏହାଥିଲା ଭଗବାନ କୃଷ୍ଣଙ୍କର ମାୟା ଭିଆଣ । ଜୟ, ବିଜୟ ଅସୁର ବଂଶରେ ପ୍ରଥମ ଜନ୍ମ ହିରଣାକ୍ଷ ହିରଣ୍ୟ କଶିପୁ, ଦ୍ୱିତୀୟ ଜନ୍ମ ରାବଣ, କୁମ୍ଭକର୍ଣ୍ଣ, ତୃତୀୟ ଜନ୍ମ କଂସ, କେଶୀ । ଏହି ତୃତୀୟ ଜନ୍ମ ପରେ ସେମାନେ ଅଭିଶାପରୁ ମୁକ୍ତ ହୋଇଥିଲେ ।



# ଦଶମ ସ୍କନ୍ଧ

## ଦ୍ୱାରିକା ଲୀଳା

### ( କୃଷ୍ଣ ଉଦ୍ଧବଙ୍କୁ ଗୋପ ପ୍ରେରଣ )

ଗୋପୀଙ୍କୁ କହ ଯା ତୁରିତ — ମୋହର ସମସ୍ତ ଉଦନ୍ତ ।
ଗୋପୀଙ୍କ ଠାରେ ମୋର ମନ — ମୁଁ ତାଙ୍କ ଅଟଇ ଜୀବନ ।

ଇଷ୍ଟ ଦେବତା ତାଙ୍କ ମୁହିଁ          ମୋ ତହୁଁ ଗତି ପତି ନାହିଁ ।
ଯେ ସର୍ବଧର୍ମ ଛାଡ଼ି ମୋତେ          ଭଜନ୍ତି ଭକତଙ୍କ ହିତେ ।
ମୁଁ ବହେ ତାଙ୍କୁ ମୋର ହୃଦେ          ସେ ଯେ ଭଜନ୍ତି ମୋର ପାଦେ ।

* ବିଶେଷ କଥନ *

କୃଷ୍ଣ ବଳରାମଙ୍କୁ ରଥରେ ବସାଇ ଯେତେବେଳେ ଅକ୍ରୂର ପ୍ରସ୍ତୁତ ହେଲେ ମଥୁରାକୁ ଯିବାପାଇଁ ସେତେବେଳେ ଗୋପୀମାନେ ରଥ ଚକ ତଳେ ଶୋଇ ରହି କୃଷ୍ଣଙ୍କୁ ମଥୁରାକୁ ଛାଡ଼ିବେ ନାହିଁ ବୋଲି ଧୂଳିରେ ଗଡ଼ିଲେ । ତେଣୁ ଶ୍ରୀକୃଷ୍ଣ ବାଧ୍ୟ ହୋଇ ଅଳ୍ପ ଦିନ ଭିତରେ ଫେରିଆସି ଗୋପୀମାନଙ୍କୁ ଦେଖାଦେବ ବୋଲି ପ୍ରତିଶ୍ରୁତି ଦେଇଥିଲେ । ତାପରେ ମଥୁରାକୁ ଯାଇ କଂସ ବଧ ପରେ ଉଦ୍ଧବଙ୍କୁ ଗୋପୀ ମାନଙ୍କୁ ପଠାଇଥିଲେ । ଶ୍ରୀକୃଷ୍ଣ ଶୀଘ୍ର ଗୋପପୁରକୁ ଫେରିବେବୋଲି ଉଦ୍ଧବ ଗୋପୀମାନଙ୍କୁ ଜଣାଇଥିଲେ ।

ଉଦ୍ଧବ ଓ ନନ୍ଦ ରାଜାଙ୍କ ଭେଟ

ଯେତେ ହୋ ନନ୍ଦ ଦେଖୁ ତୁହି          ଭୁତ ଭବିଷ୍ୟ ଯେତେ ହୋଇ ।
ସ୍ଥାବର ଜଙ୍ଗମ ଜଗତ          ସମସ୍ତ ସୃଷ୍ଟି ଭଗବତ ।
ହରିହୁଁ ନୁହଇ ଆନ          ସକଳ ମାୟାର ଭିଆଣ ।
ସାଧୁଙ୍କୁ ଯେ ଦିଏ କଷଣ          ତାହାଙ୍କୁ ନାଶେ ନାରାୟଣ ।

ସକଳ ଜୀବ ଆତ୍ମା ହରି                    ମାୟାରେ ସର୍ବ ଅଛି ଧରି ।
ଏଣୁ ଏ ଈଶ୍ୱର ବୋଲାଇ                    ଜନ୍ମ ମରଣ ତାର ନାହିଁ ।

## * ବିଶେଷ କଥନ *

ଉଦ୍ଧବ ନନ୍ଦରଜାଙ୍କୁ ସାକ୍ଷାତ କରି କହିଲେ ' ହେ ରଜା ଆମ୍ଭେମାନେ ସମସ୍ତେ ମାୟାଗ୍ରସ୍ତ । ଭଗବାନଙ୍କର ସମସ୍ତ ସୃଷ୍ଟି ମଧ୍ୟ ମାୟା ଭଗବାନଙ୍କର ଏ ସୃଷ୍ଟିର ରହସ୍ୟ ଭଗବାନଙ୍କ ଛଡା ଆଉ କେହି ବୁଝି ପାରିବେ ନାହିଁ । ଭଗବାନଙ୍କର ଜନ୍ମନାହିଁ କିମ୍ବା ମୃତ୍ୟୁ ନାହିଁ । ସେ ସଦା ଜୀବିତ ଓ ସଦା ସର୍ବତ୍ର ପରିବ୍ୟାପ୍ତ ।

## କାଳ ଯବନ

ମରଣ କାଳେ ନିଦ୍ରାଗଲେ                    କାଳକି ଗ୍ରୁଡ଼ିଦେବ ଭଲେ ।
ଦଇବ ଈଶ୍ୱର ଆୟତେ                    କେ ବଡ଼ ତା ଠାରୁ ଜଗତେ ।
ଅନେକ ଜନ୍ମ ପୁଣ୍ୟ ଫଳେ                    ମନୁଷ୍ୟ ଜନ୍ମ ମହୀତଳେ ।
ସକଳ ଦେହେ ଆତ୍ମା ଏକ                    ଅଜ୍ଞାନୀ ଜନଙ୍କୁ ଅନେକ ।
ସୁତ କଳତ୍ର ଗୃହ ଧନେ                    ପ୍ରାଣୀ ତା ମାୟାର ବନ୍ଧନେ ।
ଦୁଃଖ ସାଗରେ ମୂଢ ମତି                    ବୁଡ଼ନ୍ତି ପୁଣି ଉଠୁଥାନ୍ତି ।
ସାଧୁଙ୍କୁ ନିସ୍ତରିବା ପାଇଁ                    ଜଗତେ ଅବତରେ ସେହି ।

ତା ନାମ ଶ୍ରବଣ କୀର୍ତ୍ତନେ — ନିଶ୍ଚଳ ଚିତ୍ତେ ଯୋଗ ଧ୍ୟାନେ ।
ପତିତ ଜନେ ଶୁଦ୍ଧ କରେ — ଯେ ପ୍ରାଣୀ ଶରଣ ତାଠାରେ ।
ରୋଗ ନମଲେ ପ୍ରାଣୀ ମରେ — ବ୍ୟାଧି ଚିକିତ୍ସା ଯେ ନକରେ ।

* ବିଶେଷ କଥନ *

କାଳ ଅର୍ଥ ସମୟ । ଏହି ସମୟହିଁ ଭଗବାନ ଏବଂ ଯମ । ବିଶ୍ୱର ସମସ୍ତ କାର୍ଯ୍ୟ ସମୟର ଆଦେଶରେ ଘଟେ । ତେଣୁ ଏହି ସମୟର ସଦ୍‌ବ୍ୟବହାର କରିବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ । ବହୁ ଜନ୍ମର ପୁଣ୍ୟ ଫଳରେ ଜୀବ ମନୁଷ୍ୟ ରୂପେ ଧାରଣ କରେ । ଏପରି ଦୁର୍ଲଭ ଜୀବନ ପାଇ ମନୁଷ୍ୟ ସଂସାର ମାୟାରେ ମୋହିତ ହୋଇ ଭଗବାନଙ୍କୁ ବା ସମୟକୁ ଭୁଲିଯାଏ । ସମୟ ଯେ ପର୍ଯ୍ୟନ୍ତ ମନୁଷ୍ୟକୁ ବଞ୍ଚାଇ ରଖିଛି ସେହି ସମୟ ମଧ୍ୟରେ କେବଳ ସତ୍‌କାର୍ଯ୍ୟ କରି ଭଗବାନଙ୍କ ଶରଣ ପଶିଯିବା ଉଚିତ୍ କାରଣ କିଏ ଜାଣେ କାହାର କେତେବେଳେ ସମୟ ଶେଷ ହୋଇଯିବ ? ଅର୍ଥାତ୍ ମୃତ୍ୟୁ ହେବ ।

— * —

ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହିଲେ

ମୋର ଭକତ ପ୍ରାଣୀ ଯେତେ — ଯେବେ ପୂଜଇ ଭକ୍ତି ଚିତ୍ତେ ।
ସେ ଅଣୁମାତ୍ରେ ଯାହା ଦିଏ — ପର୍ବତ ପ୍ରାୟେ ମୁଁ ତା ନିଏ ।

ଶ୍ରଦ୍ଧା ଭକ୍ତିରେ ଯେ ପୂଜନ୍ତି ମୋ ଠାରୁ ଭିନ୍ନ ସେ ନୁହନ୍ତି ।
ଅଜ୍ଞାନୀ ପୂଜେ ଦେବତାଙ୍କୁ କାମନା ପୂର୍ଣ୍ଣ କରି ବାକୁ ।
ସେ ଯାହା ମାଗେ ଠାକୁରଙ୍କୁ ମୁଁ ତାହା ନଦିଏ ତାହାଙ୍କୁ ।
ଯହିଁରେ ମଙ୍ଗଳ ତାହାର ସେପରି ଦିଏ ତାଙ୍କୁ ବର ।
ଅଜ୍ଞାନୀ ବୁଝିପାରେ ନାହିଁ ବୃଥାରେ ଠାକୁରେ ନିନ୍ଦଇ ।
କୃଷ୍ଣ ସକଳ ପ୍ରାଣୀ ଦେହେ ଦୃଶ୍ୟେ ଅଦୃଶ୍ୟେ ଜ୍ଞାନ ମୋହେ ।
ମାୟା ମନୁଷ୍ୟ ରୂପ ହୋଇ ନିତ୍ୟ ସଭିଙ୍କ ଗୃହେ ଥାଇ ।
ତୋଷନ୍ତି ନାରୀଙ୍କର ମନ ଇତରେ ଗୃହସ୍ଥ ଯେସନ ।
ଅନେକ ପୁଣ୍ୟେ ଏ ସଂସାରେ ମନୁଷ୍ୟ ରୂପ ପ୍ରାଣୀଧରେ ।
ଏ ଆତ୍ମା ଏକ ସ୍ୱୟଂ ଜ୍ୟୋତି କେହି ତାହାଙ୍କୁ ନ ଜାଣନ୍ତି ।
ସର୍ବ ହୃଦୟେ ସେ ରୂପେ ସବୁ ଦେଖଇ ସାକ୍ଷୀ ରୂପେ ।
ତା ପାଦେ ପଶ ତୁ ଶରଣ ସମର୍ପି ସର୍ବ ପାପ ପୁଣ୍ୟ ।

* ବିଶେଷ କଥନ *

ଭକ୍ତ ଭଗବାନଙ୍କୁ ପୂଜାକରେ କୌଣସି ସାଂସାରିକ ବର ପାଇବା-ପାଇଁ ନୁହେଁ । ସେ ପ୍ରାର୍ଥନା କରେ ଭଗବାନଙ୍କର କେବଳ କୃପା ଲାଭ ପାଇଁ । କିନ୍ତୁ ଅଭକ୍ତି ବା ଅଜ୍ଞାନୀ ଭଗବାନଙ୍କୁ ପୂଜା କରେ ନିଜର ସାଂସାରିକ ସ୍ୱାର୍ଥ କାମନା ପୂର୍ଣ୍ଣ କରିବା ପାଇଁ । ଅଜ୍ଞାନୀ ଠାକୁରଙ୍କୁ ନାନା ପ୍ରକାର ପୁଷ୍ପ ପତ୍ର, ଫଳ ଭୋଗ ଦେଇ ପୂଜା କରେ । ଭଗବାନ

ସେ ସବୁ ଗ୍ରହଣ କରନ୍ତି କିନ୍ତୁ ପୂଜା କରି ସେ ଯେଉଁ ବର ମାଗେ ଅର୍ଥାତ୍ କେହି ମାଗେ ଉପଯୁକ୍ତ ସ୍ୱାମୀ, ଧନ, ମାନ, ପଦବୀ, ପୁତ୍ର ସନ୍ତାନ, ଶତ୍ରୁର ମରଣ ଇତ୍ୟାଦି କିନ୍ତୁ ଠାକୁର ତାକୁ ତାର ମନ ମୁତାବକ ବର ଦିଅନ୍ତି ନାହିଁ । ତେଣୁ ଠାକୁରଙ୍କୁ ସେ ନିନ୍ଦା କରେ । କିନ୍ତୁ ଭଗବାନ ତାକୁ ଏମିତି ବର ଦିଅନ୍ତି ଯହିଁରେ ତାହାର ମଙ୍ଗଳ ହୁଏ କିନ୍ତୁ ଅଜ୍ଞାନୀ ତାହା ବୁଝିନପାରି ଠାକୁରଙ୍କୁ ନିନ୍ଦାକରେ । କାରଣ ସେ ଯେଉଁ ବରମାଗେ ସେଥିରେ ତାର ମଙ୍ଗଳ ହେବ କି ଅମଙ୍ଗଳ ହେବ ତାହା ସେ ଜାଣେନାହିଁ । ତେଣୁ ଭଗବାନ ଯେଉଁ ବର ଦିଅନ୍ତି ତାହା ପ୍ରାଣୀର ମଙ୍ଗଳ ପାଇଁ । ଭଗବାନ ସମସ୍ତଙ୍କ ଘରେ ପୁରୁଷ ବା ସ୍ତ୍ରୀ ରୂପରେ ରହିଛନ୍ତି । ମନୁଷ୍ୟ ଭଲ କାମ କରୁଛି କି ମନ୍ଦ କାମ କରୁଛି ସେ ତାହା ସାକ୍ଷୀରୂପେ ସର୍ବଦା ଦେଖୁଛନ୍ତି । ମନୁଷ୍ୟକୁ ଭଗବାନ ତାର କର୍ମ ଅନୁସାରେ ଫଳ ଦିଅନ୍ତି । ତେଣୁ ମନୁଷ୍ୟ ତା ଜୀବନ କାଳ ମଧ୍ୟରେ ଯେଉଁ ଭଲ, ମନ୍ଦ ପାପ, ପୁଣ୍ୟ କାର୍ଯ୍ୟ ଜ୍ଞାତ ସାରରେ ବା ଅଜ୍ଞାତ ସାରରେ କରିଥାଏ । ସେ ସମସ୍ତ ଭଗବାନଙ୍କୁ ଅର୍ପଣ କରିଦେଇ ତାଙ୍କର ଶରଣ ପଶିଗଲେ ନିଶ୍ଚିତ ରୂପେ ମୁକ୍ତି ମିଳେ ଏବଂ ଅନ୍ତିମ ସମୟରେ ଭଗବାନଙ୍କ ପାଦପଦ୍ମରେ ଲୀନ ହୁଏ । ଇତି ।

ଓଁ ନମୋ ଭଗବତେ ବାସୁଦେବାୟ ।

ଦ୍ୱାରିକା ଲୀଳା ଦଶମ ସ୍କନ୍ଧ ସମାପ୍ତ ।



# ଏକାଦଶ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

## ଭଗବାନଙ୍କର ମାୟା ଖେଳ

ନମଇଁ ନୃସିଂହ ଚରଣ ଅନାଦି ପ୍ରଭୁ ନାରାୟଣ ।
ଏ ଭଗବତ ଧର୍ମ କଥା ହେଲେ ଖଣ୍ଡଇ ଭବବ୍ୟଥା ।
କୁରୁ ପାଣ୍ଡବ ମଧ୍ୟେ ହରି ମାୟା କନ୍ଦଳେ ଭେଦକରି ।
କପଟ ପାଶା ବନବାସ ଆକର୍ଷି ଦ୍ରୌପଦୀର କେଶ ।
ନିମିତ୍ତ କରି ତାଙ୍କୁ ହରି ପାଣ୍ଡବ କୌରବେ ସଂହାରି ।
ଭାର ନିବାରି ଭଗବାନ ଅନ୍ତେ ଚଳିଲେ ନିଜ ସ୍ଥାନ ।

## * ବିଶେଷ କଥନ *

ପାଣ୍ଡବ ଓ କୌରବମାନେ ନିଜ ଇଚ୍ଛାରେ ମହାଭରତ ଯୁଦ୍ଧ କରି ନଥିଲେ । ଲୋକମାନଙ୍କୁ ଶିକ୍ଷାଦେବା ଉଦ୍ଦେଶ୍ୟରେ ମିଥ୍ୟା କନ୍ଦଳ

ଲଗାଇ ସ୍ୱୟଂ ଭଗବାନ କୌରବ ଓ ପାଣ୍ଡବ ମଧ୍ୟରେ ଏ ଯୁଦ୍ଧ ଭିଆଇ ଥିଲେ । ପଶାଖେଳ ଦ୍ରୌପଦୀର କେଶ ଆକର୍ଷଣ, ଜଉଘର ପୋଡ଼ି ବନବାସ ଇତ୍ୟାଦି କାର୍ଯ୍ୟ କରାଇ ଦୁଇ ପକ୍ଷଙ୍କୁ ଉତ୍ତେଜିତ କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଦୁଷ୍ଟ ଅନ୍ୟାୟୀ କୌରବମାନଙ୍କୁ ପାଣ୍ଡବମାନେ ବିନାଶ କରି ଦେଶରେ ଶାନ୍ତି ସ୍ଥାପନ କରନ୍ତୁ । ତାହାହିଁ ହେଲା । ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କର ସାରଥି ରୂପେ କୌରବ ଓ ପାଣ୍ଡବ ମଧ୍ୟରେ ଯୁଦ୍ଧ କରାଇ ଶେଷରେ ଦେଶରେ ଶାନ୍ତି ସ୍ଥାପନକରି ନିଜସ୍ଥାନ ବୈକୁଣ୍ଠକୁ ଚାଲିଗଲେ ।



ଅବଧୂତ କହିଲେ

ବିଷ୍ଣୁ ଭକତ ଜନଙ୍କର ଜଗତେ ନାହିଁ ନିଜ ପର ।
ଯେ ଭଜେ ଜାଣି ବିଷ୍ଣୁମାୟା ସେ ହରି କରେ ତାକୁ ଦୟା ।
ଅମୃତ ବିନୟ ବଚନ କହି ତୋଷିବ ଜନମନ ।
ସକଳ ଦେହେ ନାରାୟଣ ଅଛଇ ଏହା ଦୃଢେ ଜାଣ ।

* ବିଶେଷ କଥନ *

ବିଷ୍ଣୁ ଭକ୍ତଙ୍କର ସମସ୍ତେ ନିଜର, ସମସ୍ତେ ପର, ଭକ୍ତଙ୍କ ନିକଟରେ ସମସ୍ତେ ସମାନ । ନାରାୟଣ ସମସ୍ତଙ୍କ ହୃଦୟରେ ସମାନ ଭାବରେ

ଅଛନ୍ତି । ଏହା ଭବି ଭକ୍ତ ସର୍ବଦା ନାରାୟଣଙ୍କର ଭଜନ କରେ ଓ ସମସ୍ତଙ୍କୁ ବିନୀତ ମଧୁର କଥା କହି ଆନନ୍ଦିତ କରେ ।



ଏ ଜୀବ ଈଶ୍ୱର ଆୟତ ତ୍ରିଗୁଣ ମାୟାରେ ଜଡ଼ିତ ।
ତ୍ରିଗୁଣ ମାୟା ଯାକୁ କହି କାମ କ୍ରୋଧ, ଲୋଭଟି ସେହି ।
ଜୀବକୁ ଭୁଞ୍ଜାଇ ଭୁଞ୍ଜଇ ଅନ୍ତରେ ସାକ୍ଷୀ ରୂପେ ଥାଇ ।
କର୍ମେ ଈଶ୍ୱର ଯାହାଦେବ ସନ୍ତୋଷେ ଉଦର ପୋଷିବ ।
ଦୁଃଖେ ସଞ୍ଚିତ ଯେତେ ଧନ ସେ ନୁହେଁ ସୁଖେ ପ୍ରୟୋଜନ ।
ଗୃହୀ ସ୍ୱଭବ ପୁଣ୍ୟ କରି ସ୍ୱର୍ଗେ ବସଇ ଦେହ ଧରି ।
ଧନ ଅର୍ଜିଲେ ଧର୍ମ କରି ଧର୍ମେ ପ୍ରାପତ ନରହରି ।

* ବିଶେଷ କଥନ *

କାମ, କ୍ରୋଧ, ଲୋଭ ଲୋକଙ୍କୁ ମାୟାଗ୍ରସ୍ତ କରିବାରୁ ସେମାନେ ନାନା ପ୍ରକାର ଅନ୍ୟାୟ କାର୍ଯ୍ୟ କରନ୍ତି । ଫଳରେ ସେମାନେ ନର୍କ ଭୋଗ କରନ୍ତି । ସତ୍‌କର୍ମ କରି ନ୍ୟାୟତ ଯେତିକି ରୋଜଗାର କରି-ପାରିବ ସେତିକିରେ ସନ୍ତୋଷରେ ଭୋଜନ ଇତ୍ୟାଦି କର୍ମ କରିବା ଉଚିତ୍ । ବହୁ ଦୁଃଖ କଷ୍ଟ ସହି ଅନ୍ୟାୟ ଉପାୟରେ ଧନ ସଞ୍ଚୟ କରିଥିବା ଲୋକ ସେ ଧନ ଭୋଗ କରିପାରେ ନାହିଁ । ସେ ଧନକୁ

ଅନ୍ୟ ଜଣେ ଭୋଗ କରେ । ସତ୍ ଉପାୟରେ ସତ୍‌କର୍ମ କରି ମଧ୍ୟ ବହୁ ଧନ ଅର୍ଜ୍ଜନ କରି କୌଣସି ସତ୍‌କର୍ମ, ପୁଣ୍ୟ କାର୍ଯ୍ୟ ବା ପରୋପକାରରେ ଲଗାଇ ଧର୍ମ କର୍ମ କଲେ ଲୋକ ବୈକୁଣ୍ଠରେ ବସେ ।

ଉଦ୍ଧବଙ୍କୁ ଭଗବାନ କହିଲେ

ମୁଁ ଏବେ ଦେବକାର୍ଯ୍ୟ ସାରି    ଅବନୀ ଭାର ପରିହରି ।
ଆଉତ ପ୍ରୟୋଜନ ନାହିଁ    ନିଜ ଭୁବନେ ଯିବି ମୁହିଁ ।
ମିଥ୍ୟା କନ୍ଦଳେ ଯଦୁ ବଂଶ    ସପ୍ତ ଦିବସେ ଯିବ ନାଶ ।
ଏ ଘୋର କଳିଯୁଗ ଗତି    ଲୋକେ ହୋଇବେ ଦୁଷ୍ଟ ମତି ।

* ବିଶେଷ କଥନ *

ଭଗବାନ ଶ୍ରୀକୃଷ୍ଣ ଭକ୍ତ ଉଦ୍ଧବଙ୍କୁ କହିଲେ, ମୁଁ ଦୁଷ୍ଟ ମାନଙ୍କୁ ସଂହାର କରି ସନ୍ଥମାନଙ୍କୁ ରକ୍ଷାକରି ଦେଶରେ ଶାନ୍ତି ସ୍ଥାପନ କରି ସାରିଛି । ତେଣୁ ମୋର ଏଠାରେ ପ୍ରୟୋଜନ ନାହିଁ । ଅର୍ଥାତ୍ ବର୍ତ୍ତମାନ ଏଠାରେ ମୋର କିଛି କରିବାର ନାହିଁ । ଆଉ ସାତଦିନ ପରେ ଯାଦବମାନେ ମିଥ୍ୟା କନ୍ଦଳ କରି ଧ୍ୱଂସ ପାଇଯିବେ । ଦ୍ୱାରିକା ଜଳମଗ୍ନ ହେବ । ତେଣୁ ମୋର ବାସସ୍ଥାନ ବୈକୁଣ୍ଠକୁ ଏବେ ମୁଁ ଚାଲିଯିବି ।



## ଉଦ୍ଧବ କହିଲେ

| | |
|---|---|
| ଅସତ୍ୟ ସୁତ ଦାର ଧନ | ମୋ ମନରେ ନିତ୍ୟୋଧ୍ୟାନ |
| ତୋ ମାୟା ସଙ୍କଟେ ମୁଁ ପଡ଼ି | ଭବ ମ ୟାରେ ଅଛି ପଡ଼ି । |
| ନିଶ୍ଚୟ କରି ନିଜବାସ | କହ ତୋ ମାର୍ଗ ଉପଦେଶ । |
| ଆତ୍ମା ସନ୍ତୋଷେ ସର୍ବ ସିଦ୍ଧି | ତରଇ ସଂସାର ବାରିଧି । |
| କର୍ମ ଆଚରି ସହେଁ ଦୁଃଖ | କେବେ ହେଁ ନୁହଁଇ ବିମୁଖ । |
| କର୍ମ କଷଣ ସହି ଧିରେ | ବଞ୍ଚଇ ପର ଉପକାରେ । |
| ଧନ୍ୟ ଜୀବନ ଏ ଜଗତେ | ଯେ ପ୍ରାଣୀ ବଞ୍ଚେ ପରହିତେ । |
| ସ୍ୱର୍ଗ ନରକ ବେନି ବାଣୀ | ମୁଁ ଏହା ଏକ ବୋଲି ଜାଣି । |
| ଏଣୁ ମୋ ସୁଖ ଦୁଃଖ ଏକ | ସମାନ ଦେଖେ ସର୍ବ ଲୋକ । |
| ଆହାରେ ଭଲ ମନ୍ଦ ନାହିଁ | ଯେ ସ୍ଥାନେ ଯେମନ୍ତ ମିଳଇ । |
| ଧନେ ମୋ ନାହିଁ ପ୍ରୟୋଜନ | ଏଣୁ ଦରିଦ୍ର ମୋ ଜୀବନ । |
| ଯହିଁ ଅନେକ ଲୋକ ମିଳି | ଅବଶ୍ୟ ଉପୁଜଇ କଳି । |
| ତେଣୁ ଏକାନ୍ତେ ଭ୍ରମୁଥାଇ | କେବେ ହେ ସଙ୍ଗ ନ କରଇ । |

### * ବିଶେଷ କଥନ *

ଭଗବାନ ଶ୍ରୀକୃଷ୍ଣ ବୈକୁଣ୍ଠକୁ ଯିବା କଥା ଶୁଣି ବଡ଼ ଦୁଃଖିତ ହୋଇ ଭକ୍ତ ଉଦ୍ଧବ ଶ୍ରୀକୃଷ୍ଣଙ୍କୁ କହିଲେ, 'ତୋର ଏ ମାୟା ସଂସାରରେ

ରହି ମୁଁ ଗୃହୀ ଜୀବନ କଟାଉଛି । ସର୍ବଦା ପୁଅ, ସ୍ତ୍ରୀ, ଧନ ଲୋଭରେ ପଡ଼ି ଦୁଃଖ ଭୋଗ କରୁଛି । କିନ୍ତୁ ମୁଁ ଏକ ଘର ସଂସାର ସମସ୍ତ କାର୍ଯ୍ୟ କରି ମଧ୍ୟ ସତ୍ ମାର୍ଗରେ ରହି ସତ୍‌କର୍ମ କରେ । ଦୁଃଖ ସୁଖକୁ ସମାନ ଜ୍ଞାନ କରେ । ପରର ଉପକାର କରିବା ପାଇଁ ସର୍ବଦା ପ୍ରସ୍ତୁତ ଥାଏ । ମୁଁ ନିର୍ଜନ ସ୍ଥାନରେ ଏକୁଟିଆ ବହୁ ସମୟ ରହେ । ମୁଁ କାହାରିକୁ ସାଙ୍ଗ କରେ ନାହିଁ ଯେତେବେଳେ ଯେଉଁଠି ଯେପରି ଖାଦ୍ୟ ମିଳେ । ଭଲ ମନ୍ଦ ନବାରି ସନ୍ତୋଷରେ ଖାଏଁ । ଧନହିଁ ସମସ୍ତ ଦୁଃଖର କାରଣ । ତେଣୁ ମୋର ଧନର ଲାଳସା ନାହିଁ । ମୁଁ ସର୍ବଦା ଦରିଦ୍ର ଜୀବନ ଯାପନ କରିବାକୁ ଚାହେଁ । ତେଣୁ ସର୍ବଦା ତେ ତେହିଁ ଦେଖି ମୁଁ ସବୁ ଭୁଲିଯାଏ । ତୁ ଦ୍ୱାରକା ଛାଡ଼ି ଚାଲିଗଲେ ତୋତେ ନଦେଖି ମୁଁ ତ ବଞ୍ଚିପାରିବି ନାହିଁ । ତୁ ମତେ ତୋ ସାଙ୍ଗରେ ନେଇଯା ନଚେତ୍ ତୁ କେଉଁଠି ରହିବୁ ମୋତେ କହ, ମୁଁ ସେଠାକୁ ଯାଇ ତୋ ପାଖରେ ରହିବି । ଭଗବାନ ଶ୍ରୀକୃଷ୍ଣ ଉଦ୍ଧବର ଆତୁର ମନର କଥା ଜାଣିପାରି ତାକୁ କହିଲେ 'ମୁଁ ବଦ୍ରୀ ତୀର୍ଥରେ ରହିବି' । ତୁ ସେଠାକୁ ଗଲେ ମୋତେ ପାଇବୁ ।



## ସୂତମୁନୀ ପରୀକ୍ଷିତଙ୍କୁ ଭଜନ ଉପଦେଶ

କୃଷ୍ଣର ଚରିତ କୀର୍ତ୍ତନ — ଅଶେଷ ଦୁରିତ ଖଣ୍ଡନ ।
କୃଷ୍ଣର ଭଜନ ଉପାୟ — କହୁଛି ଶୁଣ ଦେବରାୟ ।
ନାମର ଭବେ ଚିତ୍ତ ଜଡ଼ି — ହୃଦରୁ ଲଜ ଭୟ ଛାଡ଼ି ।
ଉଚ୍ଚେ ଡାକିବ ନାମ ଗୁଣ — ଶୁଣିବି ସକଳ ଶ୍ରବଣ ।
ଊର୍ଦ୍ଧ୍ୱକୁ ଟେକି ବେନି କର — କଣ୍ଠ ଗର୍ଜ୍ଜନ ଉଚ୍ଚସ୍ୱର ।
ଉନ୍ମତ୍ତ ପ୍ରାୟ ନୃତ୍ୟକର — ଲୋକ ଲଜ୍ୟାକୁ ତ୍ୟାଗ କର ।

### * ବିଶେଷ କଥନ *

ଯା ହୃଦୟରେ ଭଗବତ୍ ପ୍ରେମ ଜାତ ହୁଏ ସେ ଭଗବାନଙ୍କର ଭଜନ କରେ । ଭଜନବେଳେ ଭକ୍ତ ମାନରୁ ସମସ୍ତ ଲଜ ଭୟ ଦୂରକରି କାହାରିକୁ ନଡରି ଦୁଇହାତ ଉପରକୁ ଟେକି ଉଚ୍ଚ ସ୍ୱରରେ ପ୍ରଭୁଙ୍କର ନାମ ଗୁଣ ଯେପରି ସମସ୍ତ ଶୁଣି ପାରିବେ କୀର୍ତ୍ତନରେ ମାତି ନାଚି ନାଚି ନଗର ପରିକ୍ରମା କରେ ।



### ଗୃହସ୍ଥ ଜୀବନ

ଅମୃତ ବିନୟ ବଚନେ — କହି ତୋଷିବ ଜନ ମନ
ପ୍ରଣାମ କରୁଥିବ ନିତ୍ୟେ — କୃଷ୍ଣେ ଅର୍ପିତ ଦୃଢ ଚିତ୍ତେ ।

ପରମ ଶାସ୍ତ୍ର ଭଗବତ — ଅଭ୍ୟାସ କରୁଥିବ ନିତ୍ୟ ।
ଅନ୍ୟ ଶାସ୍ତ୍ରର ଗୁଣ ଦୋଷ — ନପଢ ନକର ପ୍ରକାଶ ।
ସକଳ କୃଷ୍ଣେ ସମର୍ପିତ — ନିଷ୍କାମ କର୍ମେ ସୁଖେ ଥିବ ।
ଯେ ଥିବେ ସୁତ ଦାରାଧନ — କୃଷ୍ଣେ କରିବ ସମର୍ପଣ ।
ପୁତ ନିବେଶି ପତ୍ନୀପାଶ — ଧରିବ ସନ୍ୟାସୀର ବେଶ ।
ପୁତ୍ର ନଥିଲେ ପତ୍ନୀ ସଙ୍ଗେ — ନେଇ ଚଳିବ ବନ ଭାଗେ ।

* ବିଶେଷ କଥନ *

ଗୃହୀ ପକ୍ଷରେ ଗୃହାଶ୍ରମ ସବୁଠାରୁ ଶ୍ରେଷ୍ଠ । ଗୃହୀ ଘର ସଂସ ରର ସମସ୍ତ କର୍ମ କରି ମଧ୍ୟ ଭଗବାନଙ୍କର ସାନ୍ନିଧ ଲଭ କରିପାରେ । ଗୃହୀ ପ୍ରତିଦିନ ଗୀତା, ଭଗବତ ଆଦି ଧର୍ମଗ୍ରନ୍ଥ ଅଭ୍ୟାସକରିବା ଉଚିତ୍ ସମସ୍ତଙ୍କୁ ବିନୀତ ଓ ମଧୁର ବଚନ କହି ନିଜର ଲୋକ ବୋଲି ଭାବି ଖୁସି କରିବା ଉଚିତ୍ । ସେବା, ଧନ, ମଧୁର ବଚନରେ ପରର ଉପକାରରେ ନିଯୁକ୍ତ ହେବା ଉଚିତ୍ । ଏପରି କରି ଗୃହୀ ନିଜ ଘରେ ମୃତ୍ୟୁ ପର୍ଯ୍ୟନ୍ତ ସନ୍ୟାସୀ ଜୀବନ ଯାପନ କଲେ ସବୁ ମିଳେ । କେହି କେହି ଗୃହୀ ମଧ୍ୟ ମନରେ ବୈରାଗ୍ୟ ଜାତ ହେଲେ ପତ୍ନୀ ପାଖରେ ପୁତ୍ର ରଖି ଆପେ ଚତୁର୍ଥା ବସ୍ଥାରେ ଯତିବ୍ରତ ଅର୍ଥାତ୍ ବନାଶ୍ରମ ବ୍ରତ ପାଳନ କରନ୍ତି । ପୁତ୍ର ନଥିଲେ ସ୍ତ୍ରୀକୁ ସଙ୍ଗରେ ନେଇ ବନରେ ନିର୍ଜନ ସ୍ଥାନରେରହି କଠୋର ତପସ୍ୟାରେ ରହି ଶେଷ ଜୀବନ କଟାନ୍ତି ତେଣୁ ଏହା ବଡ କଷ୍ଟ ସାଧ୍ୟ । ଗୃହାଶ୍ରମରେ ଆତ୍ମାକୁ କଷ୍ଟ ନଦେଇ ମୃତ୍ୟୁ

ପର୍ଯ୍ୟନ୍ତ ସନ୍ୟାସ ଜୀବନ ଯାପନ କରି ସନ୍ୟାସୀ ମାନଙ୍କ ପରି ଗୃହୀ ମଧ୍ୟ ମୃତ୍ୟୁ ପରେ ଭଗବାନଙ୍କ ପାଦପଦ୍ମରେ ଲୀନ ହୁଅନ୍ତି ।

## କୃଷ୍ଣ ଅବତାର

କୃଷ୍ଣ ରୂପରେ ଅବତରି କଂସକୁ ମରାଇ ମୁରାରି ।
ଉଗ୍ରସେନକୁ ରଜା କଲେ ଗୋପେ ଗୋପୀଙ୍କୁ ନିସ୍ତରିଲେ ।
ବିପଦ ବନ୍ଧୁ ନାରାୟଣ ଦ୍ରୌପଦୀ ଲଜ୍ୟା ନିବାରଣ ।
ମାୟା କନ୍ଦଳେ ଭେଦକରି ଅର୍ଜ୍ଜୁନ କୌରବେ ସଂହାରି ।
ନୃସିଂହ ରୂପେ ଅବତରି ହିରଣ୍ୟ କଶିପୁ ବିଦାରି ।
ରାବଣ ରାମ ରୂପେ ମାରି ସଂକଟୁ ଜାନକୀ ଉଦ୍ଧାରି ।
ପୁଣି ଅନନ୍ତ ଅବତାରେ ହଳ ମୁଷଳ ଧରି କରେ ।
ଘୋର ଦାନବେ ସଂହରିଲେ ସୁଖେ ବସୁନ୍ଧରା ସ୍ଥାପିଲେ ।
ଦ୍ୱାପରେ ବୁଦ୍ଧ ଅବତାରେ ଜ୍ଞାନ ବିସ୍ତାରି ଏ ସଂସାରେ ।
ଅଶ୍ୱଆରୋହି କଳ୍କୀ ରୂପେ ମ୍ଳେଚ୍ଛ ସଂହାରି ମହା କୋପେ ।
ଏମନ୍ତେ ନାନା ରୂପ ଧରେ ସେ ହରି ଜଗତେ ବିହରେ ।
ଅଧର୍ମ ବଢେ ଯେତେବେଳେ ତକ୍ଷଣେ ଜନ୍ମେ ଅବହେଳେ ।
ଧର୍ମ ସ୍ଥାପଇ କାଳେ କାଳେ ଶାନ୍ତି ସ୍ଥାପଇ ଏ ଶରଣେ ।

* ବିଶେଷ କଥନ *

ଭଗବାନ ଶ୍ରୀକୃଷ୍ଣ ନର ରୂପରେ ଅବତାର ଗ୍ରହଣ କରି ଦୁଷ୍ଟମାନଙ୍କୁ ସଂହାର କରି ସନ୍ଥମାନଙ୍କୁ ରକ୍ଷାକରି ପୃଥିବୀରେ ଶାନ୍ତି ସ୍ଥାପନ କରିଥିଲେ । ପୃଥିବୀରେ ଯେତେବେଳେ ଅନ୍ୟାୟ, ଅତ୍ୟାଚାର, ପାପ ବୃଦ୍ଧି ହୁଏ ସେତେବେଳେ ଭଗବାନ ନରରୂପରେ ଜନ୍ମ ଗ୍ରହଣ କରି ଦୁଷ୍ଟମାନଙ୍କୁ ସଂହାର କରି ପୃଥିବୀରେ ଶାନ୍ତି ସ୍ଥାପନ କରନ୍ତି ।



ଭକ୍ତର ଲକ୍ଷଣ

ଶୁଣ ହେ ଭକତ ଲକ୍ଷଣ — ଯେ ଚିନ୍ତେ ସଦା ନାରାୟଣ ।
ସକଳ ଜୀବେ ସମବୁଦ୍ଧି — ସକଳ ଆତ୍ମା ଦୟାନିଧି ।
ଏ ଯାର ହୃଦୟେ ପ୍ରକାଶେ — ଅଶେଷ ଘୋର ଦୁଃଖନାଶ ।
କୃଷ୍ଣେ ଚିନ୍ତିଲେ କ୍ଷଣେ ମାତ୍ର — ହରଇ ସକଳ ଦୁରିତ ।
ମନୁଷ୍ୟ ଦେହେ ଦିବ୍ୟଜ୍ଞାନ — ଦେଖି ସନ୍ତୋଷ ଭଗବାନ ।
ଦୁର୍ଲ୍ଲଭ ମନୁଷ୍ୟ ଶରୀର — ଭାବେ ଅନିତ୍ୟ ସଂସାର ।
ଭାଗେ ଦୁର୍ଲଭ ଦେହପାଇ — ଯାହାର ଜ୍ଞାନ ପ୍ରକାଶଇ ।
ଜଗତ ଦେଖେ ବିଷ୍ଣୁମୟେ — ସେ ନପଡେ ମାୟା ମୋହେ ।
ଧର୍ମ କରନ୍ତି କାମ ତେଜି — ସାଧିକେ ମୋର ପାଦେ ଭଜି ।

ସୁକର୍ମେ ସାଧୁ ସଙ୍ଗ ପାଇ    କୁକର୍ମେ ଅସାଧୁ ମିଳଇ ।
ସକଳ ଧର୍ମ ତେଜି ଚିତ୍ତେ    ଯେ ପ୍ରାଣୀ ଭଜେ ଦୃଢେ ମୋତେ ।
ସେ ପ୍ରାଣୀ ଭକତ ଉତ୍ତମ    କହିଲେ ଶ୍ରୀ ପୁରୁଷୋତ୍ତମ ।

* ବିଶେଷ କଥନ *

ଯେଉଁ ଲୋକ ମୁଖରୁ କଥା କଥାକେ "ନାରାୟଣ" ଶବ୍ଦ ବାହାରୁଥାଏ କିମ୍ବା ଯେଉଁ ଲୋକ ଯେ କୌଣସି କର୍ମ କରୁଥିବା ବେଳେ ନାରାୟଣଙ୍କୁ ସ୍ମରଣ କରୁଥାଏ ଏବଂ ଯେ ସବୁ ପ୍ରାଣୀଙ୍କୁ ବିଷ୍ଣୁ ବୋଲି ଭାବେ ଓ ସର୍ବଦା ସାଧୁ ସନ୍ଥଙ୍କ ସଙ୍ଗେ ରହି ସତ୍‌କର୍ମ ଓ ପରର ଉପକାର, ସେବାକାର୍ଯ୍ୟ କରେ ସେହି ଲୋକ ପ୍ରକୃତ ଭକ୍ତ ।



ଶ୍ରୀ କୃଷ୍ଣଙ୍କର ଉଦ୍ଧବଙ୍କୁ ଉପଦେଶ

ଯେ ପୁଣ୍ୟ ଆପଣେ କରିବ    କେବେହେଁ ପରେ ନକହିବ ।
ଯେବା ମିଳିବ ଅକସ୍ମାତେ    ଆନନ୍ଦେ ସମର୍ପିବ ମୋତେ ।
ଯାବତ ନାହିଁ ଆତ୍ମଜ୍ଞାନ    ତାବତ କରେ ଗୃହ ଧର୍ମ ।
ମୁଁ ଆତ୍ମା ପ୍ରିୟ ସଖା ହୋଇ    ସକଳ କର୍ମଫଳ ଦେଇ ।
ଭକତ ଜନ ବଶ ମୁହିଁ    ତାର ରକ୍ଷଣେ ମୋର ଦେହୀ ।

ମୋ ଗଦଗଦ ବାଣୀ କ୍ଷଣକେ ହସେ କାନ୍ଦେ ପୁଣି ।
ନାଚଇ ଉନମତ୍ତ ହୋଇ ଲଜ୍ୟା ସଂକୋଚ ପାଶୋରଇ ।
କ୍ଷଣକେ ମାତେ ମୋ ଭଜନେ ଉଚ୍ଛେ ଡାକଇ ମୋର ନାମେ ।
ମୋର ଭକତ ମୋର ମିତ୍ର ସେ କରେ ଜଗତ ପବିତ୍ର ।
ସର୍ବ ସଂକଳ୍ପ ଛାଡ଼ି ତୁହି ସକଳ କର୍ମ ମୋତେ ଦେଇ ।
ଉଦ୍ଧବ ସଦା ଭଜ ମୋତେ ସଂସାର ଚିନ୍ତା ଛାଡ଼ି ଚିତ୍ତେ ।
ଉତ୍ତମ ସଙ୍ଗେ ସଙ୍ଗ ଯାର ସେ କରେ ଉତ୍ତମ ବେଭାର ।
ହୀନ ସଙ୍ଗତେ ହୀନ ମତି ହସି କହନ୍ତି ଯଦୁପତି ।

## * ବିଶେଷ କଥନ *

ଭଗବାନ କହିଲେ " ହେ ଉଦ୍ଧବ " ଯେଉଁ ଗୃହୀ ମାନଙ୍କର ଆତ୍ମଜ୍ଞାନନାହିଁ ସେମାନେ ସର୍ବଦା ଘର ଧନ୍ଦାରେ ଲାଗିଥାନ୍ତି । ଭଗବତ୍ କୃପାରୁ ଯେଉଁ ଗୃହୀ ମାନଙ୍କର ଆତ୍ମଜ୍ଞାନ ଜାତହୁଏ ସେମାନେ ସମସ୍ତ ସାଂସାରିକ କର୍ମକରି ମଧ୍ୟ ସବୁ କର୍ମ ଭଗବାନଙ୍କୁ ସମର୍ପଣ କରି ଦିଅନ୍ତି । ଏପରି ଭକ୍ତ ମୋର ଅତି ପ୍ରିୟ । ଭକ୍ତ ଭଗବାନଙ୍କର ଭଜନ କଲବେଳେ ନିଜକୁ ଭୁଲିଯାଏ । ଭକ୍ତ କାହାରିକୁ ଡ଼ରେନାହିଁ । ଲଜ୍ୟା, ସଙ୍କୋଚ ସବୁ ଭୁଲିଯାଇ ଭଗବାନଙ୍କୁ ସ୍ମରଣ କରୁ କରୁ ପାଗଳ ପରି କେତେବେଳେ ହସି ପକାଏ, କାନ୍ଦି ପକାଏ, ନାଚେ । ଲୋକ ନିନ୍ଦା

ବା ପ୍ରଶଂସା ପ୍ରତି ତାର ଲକ୍ଷ ନଥାଏ । ଭଗବାନ ଉଦ୍ଧବଙ୍କୁ କହିଲେ ହେ ଉଦ୍ଧବ ! ତୁ ସମସ୍ତ ଗୃହକର୍ମ କରି ମଧ୍ୟ ମୁଁ କେବଳ ଭଗବାନଙ୍କ କର୍ମ କରୁଛି ବୋଲି ଭାବି ସବୁ କର୍ମ ମୋତେ ସମର୍ପଣ କରିଦେଇ ସର୍ବଦା ମୋର ଭଜନ କରୁଥିଲେ ମୋତେହିଁ ପାଇବୁ ।



## ଗୃହୀ ଜୀବନ

ସ୍ୱଭାବେ ମୃତ୍ୟୁ କଳେବର ଦେହକୁ ବୋଲେ ମୋର ମୋର ।
ଦୁଃଖେ ପାଳିତ ଦାର ସୁତ ଧନ ସମ୍ପଦ ପଶୁ ଭୃତ୍ୟ ।
ଏ ସର୍ବ ଛାଡ଼ି ଅନ୍ତକାଳେ ଚଳଇ ନିଜ କର୍ମ ଫଳେ ।
ହରି ବିମୁଖ ଯେତେ ପ୍ରାଣୀ ନତରେ ଭବ ତରଙ୍ଗିଣୀ ।
ବ୍ରାହ୍ମଣ ଆଦି ଚାରି ବର୍ଣ୍ଣେ ତରିବେ ନାମ ସଂକୀର୍ତ୍ତନେ ।
ଉଦ୍ଧବ ଏକ ମନେ ଶୁଣ ବ୍ରାହ୍ମଣ ଆଦିର ଲକ୍ଷଣ ।
ତପ ଶଉଚ ଶମଦମ ସତ୍ୟ ସନ୍ତୋଷ ଦୟାଧର୍ମ ।
ଏ ସର୍ବ ବ୍ରାହ୍ମଣ ଲକ୍ଷଣ ଏବେ କ୍ଷତ୍ରୀୟ ଗୁଣ ଶୁଣ ।
ତେଜ ଉଦ୍ୟମ ବଳ ସୌର୍ଯ୍ୟ ବିକ୍ରମ ଭକତି ଐଶ୍ୱର୍ଯ୍ୟ ।
ଆବର ବୈଶ୍ୟ ଗୁଣ ଶୁଣ କୃଷି ବାଣିଜ୍ୟ ଗୋରକ୍ଷଣ ।
ସତ୍‌ମାର୍ଗେ କ୍ରୟ ଓ ବିକ୍ରୟ ଧର୍ମ କର୍ମ ଧନ ସଞ୍ଚୟ ।

ଦେବତା, ଗୃହୀ ଦ୍ୱିଜ ବନ ଶୁଦ୍ରର ସେବା ଅଟେ ଧର୍ମ ।
ଆନନ୍ଦେ ପରୀକ୍ଷିତ ଆଗେ ଶୁକ କହନ୍ତି ଅନୁରାଗେ ।

## * ବିଶେଷ କଥନ *

ଗୃହୀ ଧନ ସମ୍ପଦ ସ୍ତ୍ରୀ ପୁତ୍ର ଏବଂ ନିଜର ଦେହକୁ ମୋର ମୋର ବୋଲି କହି ନିଜର ବୋଲି ମନେ କରେ । ବହୁ ଦୁଃଖ କଷ୍ଟ ସହି ଧନ ସମ୍ପତ୍ତି ସଞ୍ଚୟ କରେ ଓ ସ୍ତ୍ରୀ, ପୁତ୍ର ମାନଙ୍କୁ ନିଜର ବୋଲି ବହୁ ଯତ୍ନ କରି ପୋଷେ ପାଳେ । ମୃତ୍ୟୁ ପରେ ଏ ସମସ୍ତ ଛାଡ଼ି ଚାଲିଯାଏ ତାହାପରେ ସେ କିଛି ଜାଣିପାରେ ନାହିଁ । ଦେବ ସେବା ପବିତ୍ର ଜୀବନ ଯାପନ, ସତ୍‌କର୍ମ କରିବା, ଦୟା ଧର୍ମ ଓ ସଦା ସନ୍ତୁଷ୍ଟରହିବା ବ୍ରାହ୍ମଣର ସ୍ୱାଭବିକ କର୍ମ । ତେଜ,ବୀରତ୍ୱ, ସୁଶାସନ, ଧର୍ମ ପରାୟଣ କ୍ଷତ୍ରୀୟର ସ୍ୱାଭବିକ ଗୁଣ । କୃଷି, ବାଣିଜ୍ୟ, ଗୋପାଳନ ବୈଶ୍ୟର ସ୍ୱାଭବିକ ଗୁଣ । ଶୁଦ୍ରର ସେବାକାର୍ଯ୍ୟହିଁ ସ୍ୱାଭବିକ ଗୁଣ । ନିଜ ନିଜର ସ୍ୱାଭବିକ କର୍ମ କଲେ ମୁକ୍ତି ମିଳେ । ନିଜ ଧର୍ମ ଛାଡ଼ି ପରଧର୍ମ ଗ୍ରହଣ କଲେ ନର୍କ ଭୋଗ କରେ ।



ଶୁକ ପରୀକ୍ଷିତଙ୍କୁ କହିଲେ

ଏ ଘୋର କଳିଯୁଗ ଗତି ଲୋକେ ହୋଇବେ ଦୁଷ୍ଟମତି ।
ହିଂସା ବହିବେ ଏକେ ଏକେ ସ୍ୱାର୍ଥେ ମଜିବେ ଦୁଃଖେ ସୁଖେ ।

ଅଗମ୍ୟେ କରିବେ ଗମନ ନିନ୍ଦିବେ ଗୁରୁଙ୍କ ବଚନ ।
ଏଣୁ ହୋଇବେ ଅଳ୍ପାୟୁଷ ପାପେ ସକଳେ ଯିବେ ନାଶ ।
ଗୁରୁହିଁ ସାକ୍ଷାତେ ଈଶ୍ୱର ତାହାଙ୍କୁ ନ ମଣିବ ନର ।
ଅହିଂସା ସନ୍ୟାସୀ ଲକ୍ଷଣ ଜ୍ଞାନୀର ଅଚଞ୍ଚଳ ମନ ।
କର୍ମର ଫଳ ତ୍ୟାଗ କରି ବିଷ୍ଣୁର ଭବ ହୃଦେ ଧରି ।
ଯେ ଜ୍ଞାନୀ ସର୍ବ କର୍ମ କରେ ଯେ ବଞ୍ଚେ ପର ଉପକାରେ ।
ଆସକ୍ତି ରହିତ କରମ ପରମ ମୋକ୍ଷର କାରଣ ।
ମୋ ନାମ ଶ୍ରବଣ କୀର୍ତ୍ତନେ ଶ୍ରଦ୍ଧା ଉପୁଜେ ଯାର ମନେ ।
ଭକ୍ତି ଯୋଗରେ ଅଧିକାରୀ ସେ କେଭେଁ ନୁହଇ ସଂସାରୀ ।
ଜ୍ଞାନରୁ ଭକତି ଉଦୟେ ନର ଜନମ ଧନ୍ୟ ହୁଏ ।



* ବିଶେଷ କଥନ *

ଅଜ୍ଞାନୀମାନେ ସଂସାର ପ୍ରତି ଆସକ୍ତ ହୋଇ ଯେପରି ଗୃହକର୍ମ କରନ୍ତି ଜ୍ଞାନୀମାନେ ଅନାସକ୍ତ ହୋଇ ସେହିପରି କର୍ମ କରି ଅଜ୍ଞାନୀମାନଙ୍କୁ କର୍ମରେ ନିଯୁକ୍ତି କରିବା ଉଚିତ୍ । ଆସକ୍ତି ନରଖି କାମ କଲେ ମୁକ୍ତି ମିଳେ । ଯଦି ଜଣେ ଗୃହୀ ଘରେ ରହି ସାଂସାରିକ ସମସ୍ତ କର୍ମ-

କରି ଅହିଂସା ଧର୍ମ ପାଳନ କରିଥାଏ, ତେବେ ସେ ସନ୍ୟାସୀ ଗୃହୀ-ନୁହେଁ । ଯେ ପରୋପକାରୀ, ଗୁରୁସେବା କରେ ଏବଂ ଗୁରୁଙ୍କୁ ନର ମନେ ନକରି ନାରାୟଣ ବୋଲି ମନେ କରେ ସେହି ଲୋକ ଜ୍ଞାନୀ । ହୃଦୟରେ ଜ୍ଞାନ ଜାତ ହେଲେ ସେ ସମାନ ବୋଲି ମନେ କରେ । ଭଗବାନଙ୍କର ନାମ, ଭଜନ, କୀର୍ତ୍ତନ ଶୁଣିବା ପାଇଁ ଯାହାର ମନରେ ଶ୍ରଦ୍ଧା ଜାତ ହୁଏ ସେ ଜ୍ଞାନୀ ଏବଂ ଭକ୍ତ ।



## ପଣ୍ଡିତଙ୍କର ଭଗବାନଙ୍କୁ ପ୍ରାର୍ଥନା

ହେ ଜଗନ୍ନାଥ ନାରାୟଣ　　ତୋ ପାଦେ ପଶିଲି ଶରଣ ।
ତୋ ନାମ ଦୁଷ୍କୃତ ଦହନ　　ମୋ ପାପ କର ବିମୋଚନ ।

## * ବିଶେଷ କଥନ *

ନାରାୟଣଙ୍କ ନାମ ସ୍ମରଣ, ଭଜନ କଲେ ମହାପାପୀ ମଧ୍ୟ ପୁଣ୍ୟାତ୍ମା ହୋଇଯାଏ ଏବଂ ତାହାର ମୃତ୍ୟୁ ଭୟ ମଧ୍ୟ ଦୂର ହୁଏ । ପଣ୍ଡିତ ଋଷିମାନଙ୍କର ଉପଦେଶରୁ ଜାଣିପାରିବାରୁ ସେ ଭଗବାନ-ଙ୍କର ଭଜନ ଓ ନାମ ସ୍ମରଣ କରି ମୃତ୍ୟୁ ଭୟରୁ ରକ୍ଷା ପାଇଥିଲେ ।



### ଶୁକ ପରୀକ୍ଷିତଙ୍କୁ କହିଲେ

ଶୁଣ ପରୀକ୍ଷ କହେ ତୋତେ — ବିଷୟ ଧ୍ୟାନ ଯାର ଚିତ୍ତେ ।
କାମରୁ କ୍ରୋଧର ଜନମ — କ୍ରୋଧ ବଢିଲେ ମତିଭ୍ରମ ।
ଅଜ୍ଞାନୀ ହୁଏ ବୁଦ୍ଧିହୀନ — ଏଣୁ ତା ଜନ୍ମ ଅକାରଣ ।

### * ବିଶେଷ କଥନ *

କାମୀ ପୁରୁଷମାନେ ନିଜର ସ୍ୱାର୍ଥ ସାଧନ ପାଇଁ ନାନା ଦୁଷ୍କର୍ମ କରନ୍ତି ଏବଂ ଭୟଙ୍କର କ୍ରୋଧି ହୁଅନ୍ତି । ଫଳରେ ସେମାନଙ୍କର ହିତାହିତ ଜ୍ଞାନ ଲୋପ ହୁଏ । ତାର ବିଚାର ଶକ୍ତି ଲୋପ ହେବାରୁ କଣ କରିବା ଉଚିତ୍ ଅନୁଚିତ୍ କିଛି ଜାଣି ପାରେନାହିଁ । ତେଣୁ ସେ ନାନା ପ୍ରକାର ପାପ କର୍ମ କରି ନର୍କ ଭୋଗ କରେ । ରାଗ ବ୍ରହ୍ମ ଚଣ୍ଡାଳ । ରାଗୀ ଲୋକ ଚଣ୍ଡାଳ ସହିତ ସମାନ ତେଣୁ ତାର ମନୁଷ୍ୟ ଜନ୍ମ ବୃଥା ହୋଇଯାଏ । ତେଣୁ ମୃତ୍ୟୁପରେ ସେ ପଶୁ ଯୋନୀରେ ଜନ୍ମହୁଏ ।



### ଭଗବାନ କହିଲେ

ଯାହାକୁ ହୁଏ ମୁଁ ସଦୟ — ଜ୍ଞାନ ତାର ହୃଦରୁ ଉଦୟ ।
ମର୍ତ୍ତ୍ୟେ ମନୁଷ୍ୟ ଦେହ ବହି — ଦେବତା ହେଲେବ ମରଇ ।

ଈଶ୍ୱର ଥାଏ ସାକ୍ଷୀ ରୂପେ କର୍ମ କରଇ ନାନା ରୂପେ ।
ମନ ଆୟତ୍ତ ଯାରନାହିଁ ନାନାଦି କର୍ମ ସେ କରଇ ।
ଆପଣା ହସ୍ତେ ଜିହ୍ୱା ଛେଦି କେ ଅଛି ତାର ପ୍ରତିବାଦୀ ।
ସତ୍ତ୍ୱ ପ୍ରକାଶ ଯାର ହୃଦେ ଦୃଢେ ସେ ଭଜେ ମୋର ପାଦେ ।
ଅନେକ ଜନ୍ମ ପୁଣ୍ୟ ବଳେ ମନୁଷ୍ୟ ଜନ୍ମ ମହୀତଳେ ।
ଯାହାର ଦିବ୍ୟଜ୍ଞାନ ସ୍ଫୁରେ ମୋର ମହିମା ସେ ସ୍ମରେ ।

* ବିଶେଷ କଥନ *

ଭଗବାନଙ୍କର କୃପା ନଥିଲେ ମନୁଷ୍ୟ ହୃଦୟରେ ଜ୍ଞାନ ଜାତ-ହୁଏନାହିଁ । ସେ ସମସ୍ତ କାମ କରଇ ସମସ୍ତଙ୍କ ହୃଦୟରେ ସାକ୍ଷୀରୂପେ ଥାନ୍ତି । ଜାଣିଶୁଣି ଅନ୍ୟାୟକାର୍ଯ୍ୟ କଲେ ନିଶ୍ଚୟ ଦଣ୍ଡମିଳେ । ମନୁଷ୍ୟ ଜନ୍ମହିଁ ଭଗବାନଙ୍କର ଏକମାତ୍ର ଶ୍ରେଷ୍ଠ ସୃଷ୍ଟି । ପୂର୍ବ ଜନ୍ମର ସତ୍‌କର୍ମ ଯୋଗୁ ଏ ଜନ୍ମରେ ମନରେ ଈଶ୍ୱର ଭାବ ଜନ୍ମେ ଓ ସେ ତାଙ୍କର ଭକ୍ତ ହୋଇଯାଏ ।



## ପିଙ୍ଗଳା ବେଶ୍ୟାର ବୈରାଗ୍ୟ

ପିଙ୍ଗଳା ବେଶ୍ୟା ପୂର୍ବ ଭାଗ୍ୟ ଚିତ୍ତେ ଉପୁଜିଲା ବୈରାଗ୍ୟ ।
ସର୍ବ ନାଶିଲି କାମ ଭାବେ ନାଶ ସ୍ୱଭାବ ଧନ ଲୋଭେ ।

ମାତିଲି ଧନେ ଦେଇ ମନ ଧିକ ମୋ ଏ ସ୍ତିରୀ ଜନମ ।
ନିକଟେ ଅଛି ମୋର ଭର୍ତ୍ତା ସର୍ବ ସମ୍ପଦ ସୁଖ ଦାତା ।
ନିଷ୍ଫଳ ମୋହର ଜୀବନ ଅଜ୍ଞାନେ ଗଲା ଏତେ ଦିନ ।
ଯାବତ ଗୋବିନ୍ଦ ଚରଣ ଏ ଜୀବ ନପଶେ ଶରଣ ।
ତାବତ ଜ୍ଞାନ ନାହିଁ ତାର ଦୁଃଖେ ଘାରିଲା ତା ଅନ୍ତର ।
କୃଷ୍ଣର ଅଭୟ ଚରଣ ଚିନ୍ତି ସେ ପଶିଲା ଶରଣ ।
ପିଙ୍ଗଳା ଗଲା ଘୋର ବନେ ପଶିଲା ଶ୍ରୀହରି ଚରଣେ ।

* ବିଶେଷ କଥନ *

ପୂର୍ବ ଜନ୍ମରେ ଯେ ଯେପରି କର୍ମକରିଥାଏ ପର ଜନ୍ମରେ ସେ ସେପରି ଫଳ ଭୋଗକରେ । ଜଣେ ଉଚ୍ଚ ବଂଶରେ ଜନ୍ମ ହେଉଛି, ଜଣେ ନୀଚ ବଂଶରେ ଜନ୍ମ ଗ୍ରହଣ କରୁଛି କାହିଁକି ? ଜଣେ ଦରିଦ୍ର ଘରେ ଜନ୍ମହୁଏ କାହିଁକି ? ପୂର୍ବ ଜନ୍ମର କର୍ମ ଅନୁସାରେ ପରଜନ୍ମରେ ମନୁଷ୍ୟ ସୁଖ ବା ଦୁଃଖ ଭୋଗକରେ । କିନ୍ତୁ ମାୟାବଦ୍ଧ ମନୁଷ୍ୟ ତାହା ବୁଝି ପାରେନାହିଁ । ପିଙ୍ଗଳା ପୂର୍ବ ଜନ୍ମରେ ଯୌବନ ଗର୍ବରେ ମାତି ଧନ ଲୋଭରେ ବେଶ୍ୟାଗିରି କରିଥିଲା । ଯୌବନ ପରେ ତୀର୍ଥାଟନ ପ୍ରଭୃତି କିଛି ପୁଣ୍ୟକାର୍ଯ୍ୟ ମଧ୍ୟ କରିଥିଲା । ତାର ପରଜନ୍ମରେ ସେହିପରି ବେଶ୍ୟାଗିରି କରି ଧନଅର୍ଜନ କରିବାକୁ ତାରଇଚ୍ଛା ହେବାରୁ ଯୌବନ

କାଳରେ ବହୁଧନ ଅର୍ଜନ କରି ପାରିଥିଲା । ଯୌବନ ପରେ ତାର ମନରେ ଅନୁତାପ ଜାତ ହେଲା । ପୂର୍ବ ଜନ୍ମର ପୁଣ୍ୟ ଫଳରେ ତାର ମନରେ ବୈରାଗ୍ୟ ଜାତ ହେଲା । ସେ ସମସ୍ତ ଧନ ଲୋଭ ତ୍ୟାଗକରି ଭଗବାନ ବିଷ୍ଣୁଙ୍କ ଶରଣ ପଶି ବନ ଗମନ କଲା ଏବଂ ସେଠାରେ ତପସ୍ୟାରତ ଥିବା ବେଳେ ଦେହତ୍ୟାଗ କରି ବୈକୁଣ୍ଠ ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ପାଦ ପଦ୍ମରେ ଲୀନ ହେଲା ।



## ଅବଧୂତ କହିଲେ

ଯହିଁ ଅନେକ ସଙ୍ଗ ମିଳି — ଅବଶ୍ୟ ଉପୁଜଇ କଳି ।
ଏଣୁ ମୁଁ ଏକାନ୍ତେ ଭ୍ରମଇ — କେବେ ହେ ସଙ୍ଗ ନ କରଇ ।
ମନୁଷ୍ୟ ଦେହେ ଦିବ୍ୟଜ୍ଞାନ — ଦେଖି ସନ୍ତୋଷ ଭଗବାନ ।
ଭାଗ୍ୟେ ଦୁର୍ଲଭ ଦେହ ପାଇ — ଯାହାର ଜ୍ଞାନ ପ୍ରକାଶଇ ।
ସକଳ ସଙ୍ଗ ଦୂରେ ତେଜେ — ଗୋବିନ୍ଦ ପାଦେ ଦୃଢେ ଭଜେ ।
ବିକର୍ମ ତେଜି କର୍ମ କର — ସାତ୍ତ୍ୱିକେ ଭଜ ପାଦେ ତାର ।
କର୍ମ କରିଣେ ସୁଖ ପାଇ — ପ୍ରାଣୀତା ଅବଶ୍ୟ ଭୁଞ୍ଜଇ ।
ବୁଦ୍ଧି ବିବେକ ଜ୍ଞାନବଳେ — ମରଣ ଜିଣିପାରେ ହେଳେ ।
କୃଷ୍ଣ ଚରଣେ ଶିର ଦେଇ — ବୋଲ ହେ ପ୍ରଭୁ ତ୍ରାହି ତ୍ରାହି ।

ଅନାଦି ଧର୍ମ ନିରକାର ଭବସାଗରୁ କର ପାର ।
ଭକତି କୃଷ୍ଣ ପାଦୁ ଲଭ ମନୁଷ୍ୟ ଜନର ଏ ଲଭ ।

* ବିଶେଷ କଥନ *

ଭକ୍ତ ଉଦ୍ଧବ ଲୋକ ଗହଳ ତ୍ୟାଗକରି ଅଧିକାଂଶ ସମୟରେ ନିର୍ଜ୍ଜନରେ ବସି ଭଗବତ୍ ଚିନ୍ତାରେ ମଗ୍ନ ଥାନ୍ତି । ମନୁଷ୍ୟ ଜ୍ଞାନ ବଳରେ ଭଗବାନଙ୍କୁ ଜାଣିପାରନ୍ତି । ଅନ୍ୟ ପ୍ରାଣୀମାନେ ସମସ୍ତ ଅଜ୍ଞାନୀ । ତେଣୁ ସେମାନେ ଭଗବାନଙ୍କୁ ଜାଣିପାରନ୍ତି ନାହିଁ । ମନୁଷ୍ୟ ମଧ୍ୟରେ ଯେଉଁ ମାନେ ଅଜ୍ଞାନୀ ସେମାନେ ମଧ୍ୟ ଭଗବାନଙ୍କୁ ଜାଣିପାରନ୍ତିନାହିଁ । ତେଣୁ ସେମାନେ ମନୁଷ୍ୟ ଜନ୍ମ ପାଇ ମଧ୍ୟ ପଶୁ ସହିତ ସମାନ । କର୍ମ ଅର୍ଥାତ୍ ସତ୍‌କର୍ମ କଲେ ସୁଖ ମିଳେ ବିକର୍ମ ଅର୍ଥାତ୍ ଶାସ୍ତ୍ର ବିରୁଦ୍ଧ କାର୍ଯ୍ୟ କଲେ ଦୁଃଖ ମିଳେ । ତେଣୁ ବୁଦ୍ଧିମାନ ଲୋକ ତାର ବିବେକ ଜ୍ଞାନ ବଳରେ ଭଗବାନ ଶ୍ରୀକୃଷ୍ଣଙ୍କ ଭକ୍ତ ହେଲେ ମୁକ୍ତି ମିଳେ ।



ଭଗବାନଙ୍କର ଉଦ୍ଧବଙ୍କୁ ଉପଦେଶ

କୁଢେନୁ ବାନ୍ଧି ଗୃହେ ଯେହ୍ନେ ନିଗଶ ହୁନ୍ତି କ୍ଷୀର ପାନେ ।
ଦୁଷ୍ଟ ଭରିଜା ଦୋଷ ଦେଖି ଯେ କାମ ଲୋଭେ ଗୃହେ ରଖି ।

ସକଳ ଧର୍ମ ତାର ନାଶ — ନରକେ ତାର ଗୃହେ ବାସ ।
ତୀର୍ଥ ଗମନ ଯଜ୍ଞଦାନ — କୂପ ତଡାଗ ଦେବସ୍ଥାନ ।
ଏ ଆଦି କର୍ମ କରି ଯେତେ — ଆନନ୍ଦେ ସମର୍ପିବ ମୋତେ ।
ଏ ଭବେ ପ୍ରାଣୀ ମୋତେ ପାଇ — ମୋ ବିନୁ ଅନ୍ୟଗତି ନାହିଁ ।
ସର୍ବ ଆଶ୍ରୟ ଯେଣୁ ମୁହିଁ — ଯଜ୍ଞେ ସକଳ ହୋମ ଖାଇ ।
ଏଣୁ ମୁଁ ପରମ ଆଶ୍ରୟ — ସର୍ବ ଜଗତ ମୋର ଦେହ ।
ଈଶ୍ୱର ନିତ୍ୟ ନିରଞ୍ଜନ — ନିର୍ଗୁଣ ସତ୍ୟ ସନାତନ ।
ନିର୍ମଳ ଚିତ୍ତ ହୃଦେ ଧରି — ଦେବ ବ୍ରାହ୍ମଣ ସେବା କରି ।
ସମସ୍ତ ପାପ କ୍ଷୟ ହୁଏ — ସାତ୍ତ୍ୱିକ ଜ୍ଞାନ ପ୍ରକାଶଯେ ।
କେବଳ ଗୀତା ଭଗବତ — ଅଭ୍ୟାସ କରୁଥିବ ନିତ୍ୟ ।
ମୁଁ ଗତିପତି ହର୍ତ୍ତା କର୍ତ୍ତା — ମୁହିଁ ଯେ ସର୍ବଜ୍ଞାନ ଦାତା ।
ମୁଁ ଯାକୁ ହୁଅଇ ସଦୟ — ତାହାର ନାହିଁ ଦୁଃଖ ଭୟ ।
ଭକତ ଜନେ ବଶ ମୁହିଁ — ତାର ରକ୍ଷଣେ ମୋର ଦେହି ।

* ବିଶେଷ କଥନ *

ପ୍ରତ୍ୟେକ ସ୍ୱାମୀ ଓ ସ୍ତ୍ରୀ ପରସ୍ପରଠାରୁ ଅଲଗା ନୁହନ୍ତି । ପୁରୁଷର ଅର୍ଦ୍ଧାଙ୍ଗ ସ୍ତ୍ରୀ ଓ ସ୍ତ୍ରୀର ଅର୍ଦ୍ଧାଙ୍ଗ ସ୍ୱାମୀ । ତେଣୁ ସେମାନେ ଏକମନ ହୋଇ ଭଗବତ୍ ସେବା କରି ପବିତ୍ର ମନରେ ନିଜ ନିଜର କର୍ତ୍ତବ୍ୟ

ପାଳନ କରି ଭଗବାନଙ୍କ ପାଦପଦ୍ମରେ ଲୀନ ହେଲେ ମନୁଷ୍ୟ ଜନ୍ମ ସାର୍ଥକ ହୁଏ । ଯଜ୍ଞ, ଦାନ ତୀର୍ଥ ଭ୍ରମଣ, କୂପ, ପୁଷ୍କରଣୀ, ଦେବ-ଦେବୀ ମନ୍ଦିର ନିର୍ମାଣ ଆଦି ଧର୍ମକାର୍ଯ୍ୟ କଲେ ମନୁଷ୍ୟ ପୁଣ୍ୟାତ୍ମା ହୁଏ ଏବଂ ଭଗବାନ ସେହି ମାନଙ୍କୁ ଦର୍ଶନ ଦିଅନ୍ତି । ପ୍ରତ୍ୟେକ ଗୃହୀ ପ୍ରତି-ଦିନ ଦେବସେବା, ପରୋପକାର, ଗୀତା ଭଗବତ ପାଠ ପ୍ରଭୃତି ସତ୍‌କର୍ମ କରିବା ଉଚିତ୍ ।



### ଉଦ୍ଧବଙ୍କୁ ଜ୍ଞାନତତ୍ତ୍ୱ

ସ୍ତ୍ରୀ ସଙ୍ଗ ସ୍ତ୍ରୀ ସଙ୍ଗୀଙ୍କ ସଙ୍ଗ     ଦୂରେ କରିବ ପରିତ୍ୟାଗ ।
ନିରୋଳେ ବସି ଶୁଦ୍ଧ ସ୍ଥାନେ     ସ୍ଥିର ଚିନ୍ତିବ ମୋତେ ଧ୍ୟାନେ ।
ଶୁଣ ଉଦ୍ଧବ ଜ୍ଞାନତତ୍ତ୍ୱ     ବୋଲନ୍ତି ପ୍ରଭୁ ଜଗନ୍ନାଥ ।
ଭକତି ଗୁଣେ ଜ୍ଞାନ ଯୋଗେ     ଜ୍ଞାନୀ ଲଭନ୍ତି ସିଦ୍ଧି ବେଗେ ।
ଫଳର ମଧ୍ୟେ ଧାନ୍ୟ ମୁହିଁ     ଆଚାର୍ଯ୍ୟ ବଶିଷ୍ଠ ବୋଲଇ ।
ମୁଁ ଶତରୂପା ନାରୀ ମଧ୍ୟେ     ଅହିଂସା ବ୍ରତଙ୍କର ମଧ୍ୟେ ।
ମୁନୀଙ୍କ ମଧ୍ୟେ ସାଧୁ ବନ     ମୁହିଁ ଟି ନିଜେ ନାରାୟଣ ।
ମୁଁ ଆତ୍ମା ସର୍ବଜୀବ ଦେହେ     ମୋ ବିନୁ ସ୍ଥୂଳ ସୂକ୍ଷ୍ମ ନାହିଁ ।
ମୋ ନାମ ଦୃଢେ ଭଜ ତୁହି     ସକଳ କର୍ମ ମୋତେ ଦେଇ ।

ତ୍ରିଧାମ ବ୍ରହ୍ମ ମୁଁ ଓଁ କାର ସକଳ ମନ୍ତ୍ର ମଧ୍ୟେ ସାର ।
ତେଜଙ୍କ ମଧ୍ୟେ ସୂର୍ଯ୍ୟ ମୁହିଁ ମନୁଷ୍ୟେ ନୃପତି ବୋଲଇ ।
ମୁଁ ବୃହସ୍ପତି ଗ୍ରହ ମଧ୍ୟେ କୁମାର ଦେବ ସେନା ମଧ୍ୟେ ।
ସର୍ବ ମଙ୍ଗଳ ଜଗନ୍ନାଥ ମୁଁ ସଦା ସର୍ବତ୍ର ବିଦିତ ।

* ବିଶେଷ କଥନ *

ସ୍ତ୍ରୀ ସଙ୍ଗ ସ୍ତ୍ରୀ ସଙ୍ଗୀଙ୍କ ସଙ୍ଗ ତ୍ୟାଗକର । ନିର୍ଜନସ୍ଥାନରେ ବସି ଭଗବାନଙ୍କୁ ସ୍ମରଣ କଲେ ମନରେ ଇଶ୍ୱର ଭବ ଜାଗ୍ରତ ହୁଏ ଏବଂ ଏ ମାୟା ସଂସାରରେ ଅନେକ କଥା ଜାଣି ହୁଏ । କାମ, କ୍ରୋଧ ଲୋଭ ଏ ତିନୋଟି ମନୁଷ୍ୟକୁ ନର୍କରେ ପକାଏ । ଭଗବାନ ଫଳ ମଧ୍ୟରେ ଧାନ୍ୟ, ନାରୀ ମଧ୍ୟରେ ଶତରୂପା, ଧର୍ମ ମଧ୍ୟରେ ମୁନୀଙ୍କ ଅହିଂସା ମଧ୍ୟରେ ସାଧୁ ଦେହୀ ମାନଙ୍କର ଜୀବାତ୍ମା ଅଟନ୍ତି । ଭଗବାନହିଁ ତ୍ରିଧାମ ବ୍ରହ୍ମ, ମନ୍ତ୍ର ମଧ୍ୟରେ ଓଁ କାର ଓ ତେଜ ମଧ୍ୟରେ ସୂର୍ଯ୍ୟ, ମନୁଷ୍ୟ ମଧ୍ୟରେ ରଜା ଓ ଗ୍ରହ ମଧ୍ୟରେ ବୃହସ୍ପତି ଅଟନ୍ତି । ଶେଷରେ "ସର୍ବ ମଙ୍ଗଳ ଜଗନ୍ନାଥ" ବୋଲି ନିଜକୁ କହିଛନ୍ତି ।



## ବାନପ୍ରସ୍ଥ ଲକ୍ଷଣ

ବାନପ୍ରସ୍ଥ ଲକ୍ଷଣ ଶୁଣ   ବନବାସରେ ଦିଅମନ ।
ପୁତ୍ର ନିବେଶି ପତ୍ନୀ ପାଶେ   ଦୀକ୍ଷିତ ସନ୍ୟାସୀର ବେଶେ ।
ପୁତ୍ର ନଥିଲେ ପତ୍ନୀ ସଙ୍ଗେ   ନେଇ ରହିବ ବନଭାଗେ ।
ତପ ସାଧନେ ଘୋର ବନେ   ବଞ୍ଚିବ ଦୁଃଖ ସୁଖ ମନେ ।
ଏକାନ୍ତେ ଯୋଗ ଅବଧାରି   ଅନ୍ତେ ବସିବ ବିଷ୍ଣୁପୁରୀ ।
ଅବା ଆଶ୍ରମ ଧର୍ମ ତେଜି   ମୋର ଚରଣ ଦୃଢେ ଭଜି ।
ପୃଥିବୀ କରି ପର୍ଯ୍ୟଟନ   ଛାଡ଼ିବ ଆଶ୍ରମ ଲକ୍ଷଣ ।
ଗୃହସ୍ଥ ସର୍ବ ଧର୍ମ ରକ୍ଷା   ବ୍ରାହ୍ମଣ ଗୁରୁ ସେବା ଦୀକ୍ଷା ।
ତପ ଶଉଚ ମୋ ଭଜନ   ଗୃହୀର ଆଶ୍ରମ ଲକ୍ଷଣ ।
ପୂଜାରେ ହୁଅ ତତପର   ସାକ୍ଷାଙ୍କେ କର ନମସ୍କାର ।

### * ବିଶେଷ କଥନ *

୮୦ ବର୍ଷ ପରେ ବା ବୃଦ୍ଧାବସ୍ଥା ଉପସ୍ଥିତ ହେଲେ ପ୍ରତ୍ୟେକ ଗୃହୀ ବାନପ୍ରସ୍ଥ ବ୍ରତ ଅବଲମ୍ବନ କରିବା ଉଚିତ୍ । ସ୍ତ୍ରୀ ନିକଟରେ ପୁତ୍ର ରଖି ନିଜେ ଏକୁଟିଆ ସନ୍ନ୍ୟାସୀ ବେଶରେ ବନରେ ନିର୍ଜନ ସ୍ଥାନରେ ରହି ତପସ୍ୟା କରି ଶେଷ ଜୀବନ କଟାଇବା ଉଚିତ୍ । ପୁତ୍ର ନଥିଲେ ସ୍ତ୍ରୀକୁ ସଙ୍ଗରେ ବନରେ ତପସ୍ୟାବ୍ରତ ପାଳନ କରି ଶେଷ ଜୀବନ

କଟାଇବା ଉଚିତ । ବୃଦ୍ଧାବସ୍ଥାରେ ସାଧାରଣତ ଲୋକେ ଦୁର୍ବଳ, ଅସହାୟ ଓ ନାନା ରୋଗଗ୍ରସ୍ତ ହୁଅନ୍ତି । ତେଣୁ ବାନପ୍ରସ୍ଥ ବ୍ରତ ପାଳନ ପାଇଁ ବନକୁ ଯାଇଁ ଆତ୍ମାକୁ କଷ୍ଟ ନଦେଇ ଗୃହୀ ଘରେ ବସି ବାନପ୍ରସ୍ଥ ବ୍ରତ ପାଳନ କରିପାରେ । ତୀର୍ଥ ପର୍ଯ୍ୟଟନ, ଦେବସେବା, ଯଜ୍ଞ, ଦାନ ଜପ, ତପ ପ୍ରଭୃତି ପୁଣ୍ୟକାର୍ଯ୍ୟକରି, ଭଜନ, କୀର୍ତ୍ତନହିଁ ଗୃହୀର ବାନପ୍ରସ୍ଥ ବ୍ରତ । ସେ ସହଜରେ ଭଗବାନଙ୍କର କୃପାଲଭ କରି ଅନ୍ତିମ କାଳରେ ବୈକୁଣ୍ଠରେ ବିଷ୍ଣୁ ପାଦ ପଦ୍ମରେ ଲୀନ ହୁଏ ।



## ଭୀଷ୍ମଙ୍କ ଉପଦେଶ ବାଣୀ

### ସୂତ କହିଲେ

ଭୀଷ୍ମଙ୍କ ଉପଦେଶ ବାଣୀ — ଶୁଣ କହୁଛି ପରିମାଣି ।
ଜନ୍ମ ମରଣ ଏ ଜଗତେ — ଦୁଃଖ ସନ୍ତାପ ଆଦି ଯେତେ ।
ଏ ସର୍ବ ମିଥ୍ୟା ବୋଲି ଜାଣ — ସଜ୍ଞାନେ ବୁଝ ଏ ପ୍ରମାଣ ।
ଆଶା ନକରି କର୍ମ ଫଳେ — କର୍ମ କରିବ ସଦା ବେଳେ ।
ବଚନ ମଧ୍ୟେ ସତ୍ୟ ବାଣୀ — ନିର୍ଲୋପର ଧନ ଜାଣି ।
ଆନନ୍ଦେ ବିନୟ ବଚନ — କହି ତୋଷିବ ଜନ ମନ ।
ତେଜିବ କାମ କ୍ରୋଧ ଲୋଭ — ସମ ମଣିବ ଶୁଭ ଶୁଭ ।

ଈଶ୍ୱର ନାମ ଭଜୁଥିଲେ ପାପୀ ପବିତ୍ର ହୁଏ ଭଲେ ।
ଭଜନେ ସଦା ଦିଅ ମନ ତ୍ରାହି କରିବେ ନାରାୟଣ ।

* ବିଶେଷ କଥନ *

ଜନ୍ମ ମରଣ, ସୁଖ ଦୁଃଖକୁ ଭଗବାନଙ୍କର ମାୟା ବୋଲି ଜ୍ଞାନୀ ଋଷି ଉପଦେଶ ଦେଇଛନ୍ତି । ପ୍ରତ୍ୟେକ ବ୍ୟକ୍ତି ଫଳ କାମନା ନକରି ସର୍ବଦା ସତ୍‌କର୍ମରେ ନିଯୁକ୍ତ ହେବା ଉଚିତ୍ । କାମ, କ୍ରୋଧ, ଲୋଭ ତ୍ୟାଗକରି ସମସ୍ତଙ୍କୁ ମଧୁର ବଚନ କୁହ । କାହାରି ମନରେ ଦୁଃଖ କଷ୍ଟ ଦିଅନାହିଁ । ମହାପାପୀ ମଧ୍ୟ ଈଶ୍ୱର ନାମ ଭଜନ କଲେ ସମସ୍ତ ପାପରୁ ମୁକ୍ତି ହୋଇ ଅନ୍ତିମରେ ବୈକୁଣ୍ଠରେ ବାସକରେ ।

ଓଁ ନମୋ ଭଗବତେ ବାସୁଦେବାୟ । ଇତି
ଏକାଦଶ ସ୍କନ୍ଧ ସମାପ୍ତ



# ଦ୍ୱାଦଶ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦରୟେତ୍
ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

### ଶୁକ ପରୀକ୍ଷିତଙ୍କୁ କହିଲେ

ଶୁକ କହନ୍ତି ଦିବ୍ୟ ମନେ — ପରୀକ୍ଷ ଶୁଣ ସାବଧାନେ ।
କଳି ଯୁଗ ଧର୍ମ ବିଧାନ — ଏ ଯୁଗେ ହୋଇବେ ଯେସନ ।
ଯେଉଁ ଜନର ଧନ ଥିବ — ସଂସାରେ ସେ ବଡ଼ ହୋଇବ ।
କଳି ପୀଡ଼ିତ ଗୁଣ ଦୋଷ — ଅଳପ ଦିନେ ଯିବେ ନାଶ ।
ସତ୍ୟ ଯୁଗର ଧର୍ମ ଶୁଣ — ଚାରିପାଦେ ଧର୍ମ କରିଣ ।
ସତ୍ୟ ତପସ୍ୟା ଦୟାଦାନ — ଧର୍ମ ରହେ ଚାରି ପାଦେଣ ।
ତ୍ରେତାରେ ଧର୍ମ ତିନିପାଦ — ସତ୍ୟ ପଦଟି ହୁଏ ଛେଦ ।
ଦ୍ୱାପରେ ଧର୍ମ ଦୁଇପାଦ — କ୍ରମେ ଦ୍ୱି ପାଦ ହୁଏ ଛେଦ ।
ଏ ଯୁଗେ ପ୍ରାଣୀମାନେ ପୁଣି — ଧନରେ ହୋଇବେ ଅଗ୍ରଣୀ ।
କୃଷି ବାଣିଜ୍ୟ ଯେ ବିସ୍ତାର — ଏ ଧର୍ମ ଦ୍ୱାପର ଯୁଗର ।

*  ବିଶେଷ କଥନ  *

କଳି ଯୁଗରେ ଲୋକେ ଅନ୍ୟାୟ ଉପାୟରେ ବହୁଧନ ସଂଗ୍ରହ କରି ବଡଲୋକ ହୋଇଯିବେ କିନ୍ତୁ ଅଳ୍ପ ଦିନରେ ଧ୍ୱଂସ ହୋଇଯିବେ । ସତ୍ୟ ଯୁଗରେ ଲୋକମାନେ ସତ୍ୟବାଦୀ ହେବେ ଓ ସତ୍‌କାର୍ଯ୍ୟ କରିବେ ଦୟା, ଦାନ, ତପସ୍ୟା ଆଦି ଧର୍ମ କାର୍ଯ୍ୟ କରିବେ । ତେଣୁ ସେମାନେ ଦୀର୍ଘାୟୁ ହେବେ । ତ୍ରେତୟା ଯୁଗରେ ଲୋକମାନେ ସତ୍ୟ ତ୍ୟାଗ କରି ଦୟା, ଦାନ ପ୍ରଭୃତି ଧର୍ମ କରିବେ ଏବଂ ବହୁଧନରେ ମାଲିକହେବେ । ଦ୍ୱାପର ଯୁଗରେ କୃଷି ବାଣିଜ୍ୟ ବିସ୍ତାରକୁ ଧର୍ମରୂପେ ଗ୍ରହଣ କରିବେ ଓ ବହୁ ଧନର ମାଲିକ ହେବେ । ଇତି ।

ଓଁ ନମୋ ଭଗବତେ ବାସୁଦେବାୟ

। ଇତି ଦ୍ୱାଦଶ ସ୍କନ୍ଧ ସମାପ୍ତ ।



# ଏକାଦଶ ସ୍କନ୍ଧ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦିରୟେତ୍
ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

## ମୁକ୍ତିର ଉପାୟ

ଓଁ କାର ରୂପେ ଥିଲା ବେଦ　　କେହି ନ ଜାଣେ ତାର ଭେଦ ।
ଚବିଶାକ୍ଷର ବେଦମାତା　　ଓଁ କାର ସଭିଙ୍କର ପିତା ।
ମୁଁ ଆତ୍ମା ସଦାନନ୍ଦ ଦେହୀ　　ମୋ ବିନୁ ସତ୍ୟ କେହି ନାହିଁ ।
କୃଷ୍ଣ ଆଶ୍ରୟେ ସଦା ଥିବ　　କୃଷ୍ଣେ ସମସ୍ତ ସମର୍ପିବ ।
ମୁହିଁଟି ହର୍ତ୍ତା କର୍ତ୍ତା ଜାଣ　　ମୋ ପାଦେ ପଶିବ ଶରଣ ।
ପାପ ପୁଣ୍ୟ ଯା କରିଥିବ　　କୃଷ୍ଣେ ସମସ୍ତ ସମର୍ପିବ ।
କରିବ କୃଷ୍ଣଙ୍କ ଭଜନ　　ବଢ଼ିବ ଜ୍ଞାନ ଦିନୁ ଦିନ ।
ସ୍ମରଣ ଭଜନ କୀର୍ତ୍ତନ　　କରିଲେ ରଖେ ନାରାୟଣ ।
ବିଶ୍ୱାସ ମୂଳେ ଭଗବାନ　　ସନ୍ଦେହୀ ନରକ ଗମନ ।
ବିଶ୍ୱାସେ ବଇକୁଣ୍ଠେ ବାସ　　କହିଲେ ଜଗନ୍ନାଥ ଦାସ ।
ବେଦ ପୁରାଣରେ ବର୍ଣ୍ଣିତ　　ସାର ସଂଗ୍ରହ ଭଗବତ ।
ଯେ ପଢେ ଶୁଣେ ଜ୍ଞାନୀ ହୁଏ　　ସେ ନପଡେ ମାୟା ମୋହେ ।
ସୁଜନେ ଏଣେ ଦିଅ ମନ　　ତୁଟିବ ସଂସାର ବନ୍ଧନ ।
ଜୀବନେ ପାପ ପୁଣ୍ୟ ଯାହା　　କୃଷ୍ଣେ ସମର୍ପି ଦିଅ ତାହା ।
ନିର୍ଭୟେ ବଇକୁଣ୍ଠେ ବାସ　　ଯେ କରେ ଗୋବିନ୍ଦ ବିଶ୍ୱାସ ।
ଅଧମ କୃଷ୍ଣ କୃଷ୍ଣେ ସଦା　　ଚିନ୍ତେ ଛାଡ଼ି ସଂସାର ବାଧା ।
ତୋ ନାମ ଦୂଷିତ ଦହନ　　ତୋ ନାମ ଭଜି ଯାଉ ପ୍ରାଣ ।
ତୋ ପାଦେ ପଶିଲି ଶରଣ　　ମୋତେ ଉଦ୍ଧର ନାରାୟଣ ।

## * ବିଶେଷ କଥନ *

ବେଦର ମୂଳ ମନ୍ତ୍ର " ଓଁ " । ଓଁର ଅର୍ଥ ବ୍ରହ୍ମ ବା ଭଗବାନ । ସବୁ ମନ୍ତ୍ର ମଧ୍ୟରେ ଓଁ ଶ୍ରେଷ୍ଠ । ଅକ୍ଷର ଅର୍ଥ ପ୍ରକୃତି । ଏହି ପ୍ରକୃତି ୨୪ ପ୍ରକାରରେ ବିଭକ୍ତ । ସ୍ୱୟଂ ଭଗବାନହିଁ ଏହି ପ୍ରକୃତିରେ ରହି ପିତା ସ୍ୱରୂପ ସମସ୍ତ ସୃଷ୍ଟି କରୁଛନ୍ତି । ଏ ଜଗତରେ ଯାହାକିଛି ଅଛି ସବୁ ମିଥ୍ୟା କେବଳ ଏକମାତ୍ର ସତ୍ୟ ଭଗବାନ । ତେଣୁ ଏକମାତ୍ର ଭଗବାନଙ୍କ ଠାରେ ଦୃଢ଼ ବିଶ୍ୱାସ ରଖି ଶରଣ ପଶିଗଲେ ଆମ୍ଭେମାନେ ସମସ୍ତ ପାପରୁ ମୁକ୍ତ ହୋଇ ପାରିବା । କୃଷ୍ଣଙ୍କର ଭଜନ କୀର୍ତ୍ତନ କରି ଲୋକେ ଜ୍ଞାନୀ ହୁଅନ୍ତି । ଭଗବାନଙ୍କ ଠାରେ ଯାହାର ଦୃଢ଼ ବିଶ୍ୱାସ ଥାଏ ସେ ଭଗବାନଙ୍କୁ ପାଏ । ଯାହାର ବିଶ୍ୱାସ ନଥାଏ ନର୍କରେ ପଡ଼ିଥାଏ ।

ଓଁ ନମୋ ଭଗବତେ ବାସୁଦେବାୟ । ଇତି

ତ୍ରୟୋଦଶ ସ୍କନ୍ଧ ସମାପ୍ତ

ଓଁ ତତ୍ ସତ୍ ।

